ବସାଇ ପରମେଶ୍ୱରଙ୍କ ଭୋଗରାଗ କରାଇ ପରବ ଯାତ୍ରାମାନ ସେବକମାନ ଭିଆଣ କରି ଦେସମାନନ୍ତ ଦେଇ **ଦୁତି ଇନ୍ଦ୍ରଦ୍ୟୁମ୍ନ** ବୋଲାଇ ଚିତ୍ରଉପ୍ଳା ନଦି ଉତରେ ନଗର ଚଉଦୁଆର କଟକ କରି ରହି ରାଜ୍ୟ ଭୋଗ କଲେ ବରଷ ୪୦

## I.B.3 [କେଶରୀ ବଂଶ]

ଏ ଉତାରେ କେସରିମାନେ ରଜା ହୋଇଲେ । ଏମାନେ ମହେଶ ଭକ୍ତ ଏ ଭୋଗ କରି ଅଛନ୍ତି ପାଟ ୪୪ଢ଼ ଏ ରଜାମାନଙ୍କ ନାମ । ପ୍ରଥମେ ଗନ୍ଧର୍ବ କେସରୀ, ଜନ୍ମଜୟ କେସରି, ଭରତ କେସରି, କବି କେସରି ପ୍ରବୃଦ୍ଧ କେସରୀ, ହବି କେସରି, କମଳ କେସରୀ, ଚଣ୍ଡ କେସରୀ, ପ୍ରଚଣ୍ଡ କେସରୀ, **[15b]**ଧୂମ କେସରି, ବିଜୟ କେସରି, ଦଣ୍ଡପାଳ କେସରି, ମଧୁସୂଦନ କେସରି, ନୃପ କେସରି, ମଛ କେସରି, ମକର କେସରି, ପଣ୍ଡୁ କେସରି, ବୃଷକେସରି, ତ୍ରିପୁର କେସରି, ମାଧବ କେସରି, ମଙ୍ଗଳ କେସରି, ଗୋବିନ୍ଦ କେସରି,ନୃସିଂହ କେସରି, ... ରାମ କେସରି, ବାମନ କେସରି, ତ୍ରିନେତ୍ର କେଶରି, ଈଶ୍ୱର କେସରି; ଇନ୍ଦ୍ରରଥ କେସରି, ଏ ରାଜା ପରଙ୍ଗ ଦଣ୍ଡପାଟେ ଇନ୍ଦ୍ରରଥ ନାମେ ଗଡ଼ କରି କଟକ କରି ରହିଲା । ବଳ କେସରି, ପ୍ରତାପ କେସରି, ପୁରନ୍ଧର କେସରି । ଏ ରାଜା ଅର୍କକ୍ଷେତ୍ରେ କୋଣାର୍କ ଦେବଙ୍କୁ ଦେଉଳ ତୋଳାଇ ବସାଇଲା । ଆଠ ଶାସନ ବସାଇଲା । ଚମ୍ପକ କେସରି, ଲଲାଟ କେସରି, ଶ୍ରୀକଣ୍ଠ କେସରି, ...ବ କଳପ କେସରି, ଏ ରଜା ମହେଶ ଅବତାର । ଏହାଙ୍କ ରାଣି କୋଳାବତି ପାଟ ମାହାଦେବି ଯେ ଏକାମ୍ର ବନରେ ବିଷ୍ଣୁ କ୍ଷେତ୍ରେ କୃତ୍ତିବାସ ଭୁବନେଶ୍ୱରଙ୍କ ପୁରୁଣା ବଇସମ ହୋଇଥିଲା । ଦେଉଳ ଭାଙ୍ଗି ସିଦ୍ଧ ଶାସ୍ତ୍ର ପ୍ରମାଣେ କଇଳାସ ଘଟଣାରେ ଦେଉଳ ତୋଳାଇଲା । ଏ ଉତ୍ତାରେ ପଦ୍ମ କେସରି, ସରସଙ୍କ କେସରି, ଏ ରଜା ସରସଂକା ପୋଖରି ଖୋଳାଇଲା । ଲକ୍ଷ୍ମିକେସରି, ଏ ରଜା ଲକ୍ଷ୍ମୀ ସାଗର ପୋଖରି ଖୋଳାଇଲା । ସିସୁପାଳ କେସରି, ଏ ରଜା **ପରଙ୍ଗ** ଦଣ୍ଡପାଟେ **[16a]** ... ଗଡ଼ବାନ୍ଧି କଟକ କରି ରହିଲା । ସୁନ୍ୟ କେସରି, ଏ ରଜା ଏକାମ୍ରବନରେ ତପସ୍ୟା କରି ସିଦ୍ଧେଶ୍ୱର କେସରି ବୋଲାଇ ଥୋକାଏ କାଳ ରାଜ୍ୟଭୋଗ କରି ଏ ରାଜ୍ୟ ଭୋଗ ଛାଡ଼ି ଏହା ପୁଅକୁ ରଜାକରି ଏ ସିଦ୍ଧ ହୋଇ ବନେ ରହିଲା । ଏହା ପୁଅ ଉଦୟନ କେସରି ରଜା ହୋଇଲା । ଧର୍ମକେସରି । ରଜା ଝିଅ କଉସୁଲା ଜେମାଦେଇ । ଏ ଝିଅକୁ ସୁନ୍ଦର ଦେଖି ଅଧର୍ମ ଆଚରଣ କରି ଏ ଝିଅକୁ ମହାଦେଇ କଲା । ଏ ରାଣୀ ନାଏ କୋଠ ରାହାଙ୍ଗ ବିସେରେ କଉସୁଲାଗାଙ୍ଗ ଖୋଳାଇଲା । ଏ ପୋଖରି ଚାରିପାଖେ ହୁଡ଼ାରେ ଚାରି ସାସନ ବସାଇଲା । ପୋଖରି ମଝିରେ ଦିପଦଣ୍ଡି କରବାଟି କରି ସାସନ ବସାଇଲା । ଗାଏ କେଶରି ପାଟ ୪୪ ରଜା ହୋଇ ପରମେଶ୍ୱରଙ୍କୁ ସେବାକରି ରାଜ୍ୟଭୋଗ କଲେ ବରସ ୬୭୦

## I.B.4 [ଗଙ୍ଗବଂଶ]

ଏ ଉତ୍ତାରେ ଗଙ୍ଗବଂସ ପରବେସ । ଆଦିପାଟ **ଚୁଡ଼ଙ୍ଗଦେବ** ଏ ଦକ୍ଷିଣ ରାଇଜେ ଗୋକର୍ଣ୍ଣେଶ୍ୱର ଦେବଙ୍କ ବିର୍ଯ୍ୟରୁ ଜନ୍ମ ହୋଇଲାକୁ ଗଙ୍ଗବଂସ ବୋଲାଇଲେ । ... ... ବେତାଳ ସାଧେ... ...ନଗର ଦେବିମାନଙ୍କୁ କିଳଣ । ମହାପସୁମାନ କଲେ ବିନାସ । ଏ ଦକ୍ଷିଣ ରାଇଜରୁ ଆସି ଏ କଟକରେ ଦୁଷ୍ଟ ପ୍ରତାପମାନ କଲା । ସୁଣି ପାତ୍ରମାନେ କହିଲେ ମହାରାଜା ଚୁଡ଼ଙ୍ଗ ଆଚରଣେ ଚଳି ନ ପାରିବା ପରା । ଏମନ୍ତ ଶୁଣି ... ରାଜ୍ୟ ଛାଡ଼ି ପଳାଇଲା**[16b]**ବେଳେ ଚୁଡ଼ଙ୍ଗ ଗୋଡ଼ାଇଲେ । କନକଦୁର୍ଗା ଦେବି ବିରଛତ୍ର ଛଡ଼ାଇ ଘେନିବା ବେଳକୁ ଏକେସରି ରଜା କନକଦୁର୍ଗାକୁଂ ମାହାନଦିରେ ନନ୍ଦିକେଶ୍ୱର ଗଣ୍ଡରେ ପକାଇ ବିରଛତି ଛାଡ଼ିଗଲା । ଏ ବିରଛତି ଘେନି ଆସି ରାଇଜେ ରଜାହୋଇ ପାତ୍ର ମନ୍ତ୍ରିମାନଙ୍କୁ ସଙ୍ଖୋଳି ସୁବର୍ଣ୍ଣର ରାଜମାତା ଦୁର୍ଗା ଗଢ଼ାଇଲା । ପରମେଶ୍ୱରଙ୍କୁ ପୂର୍ବ ରଜାମାନେ ଦେଲା ରାଇଜ ଭୋଗ କରାଇଲା । ଏ ଚୁଡ଼ଙ୍ଗ ରଜାର ଦତ **ଦକ୍ଷିଣଦିଗ** ଦଣ୍ଡପାଟରେ ***ରାହାଙ୍ଗ*** ବିସେ ଖଣ୍ଡିଘର ଗ୍ରାମରେ ଅଖଣ୍ଡକୁ ଦେଲା । ବା୧ଟିଏ ଦେଇ ରାଇଜ ପାଳନାକରି ରାଜ୍ୟ ଭୋଗକଲା ବ୬୬।୨।୧୦।୦।

ଏ ଉତାରେ ଏହାଙ୍କ ପୁଅ **ବିରପ୍ରତାପଦେବ** ରଜା ହୋଇଲେ । ଏହାଙ୍କର ଦତ **ଲେମ୍ବାଇ** ଦଣ୍ଡପାଟେ ପରମେଶ୍ୱରଙ୍କୁ ବେରବୋଇ ଗ୍ରାମକୁ ବା୨୦୫।୧୪।୨୧, ହୁମୁରୁ ଗ୍ରାମ ବା୧୫୯।୫।୧୭, ଗାଏ ଦେସ ଗୋ୨୯ ସବାକ୍ରାନ୍ତ ଚକଡ଼ା ଭୂମି ବା୩୬୫।୦।୧୩ଧ ଦଣ୍ଡାଗୋପନ୍ଥ ପୋଖରି ପାଣିସର ଦେବତା ଦେସହେତା ମଧ ବା୧୩୭।୪।୨... ରହଣି ଭୂମି ବା୨୩୭।୧୬।୧୧ ଦେଇ ରାଇଜ ଭୋଗକଲେ ବରଷ ...

ଏ ଉତାରେ ଏହାଙ୍କ ପୁଅ **ଏକଜଟିକାମାର୍ଣ୍ଣବଦେବ** ରଜା ହୋଇଲେ, ଏ ପରମେଶ୍ୱରଙ୍କୁ ଦେଲେ **ଲେମ୍ବାଇ** ଦଣ୍ଡପାଟେ ଗୁଆଳିପଡ଼ା ଗ୍ରାମ ବା୧୯୮।୪।୩, ଗୁଆଳି ଗ୍ରାମ ବା୪୮।୧୦।୮, ଢ଼ୋମପୁର ଗ୍ରାମ ବା୬୦, ଗାଏ ଦେସ ଗୋ୩ ୯ ବା୩୦୬।୧୪ **[17a]**... ଦଣ୍ଡାଗୋପନ୍ଥ ପୋଖରି ପାଣିସର ଦେବତା ଦେସ ହେତା ମ ବା୪୦।୮।୧୪ ଥାଇ ରହଣି ଭୂମି ବା୨୫୭ ।୫ ।୨୨ ଦେଇ ରାଇଜ ଭୋଗକଲେ ବରସ ...

ଏ ଉତାରେ ଏ ପୁଅ **ମଦନମହାଦେବ** ରଜା ହେଲେ । ଏ ରଜା **ସିରାଇ** ଦଣ୍ଡପାଟେ ସହଜପାରି ଗ୍ରାମରେ କଟକ କରି ରହିଲା ।

ଏକ ଦିନକରେ ରଜା ନବରୁ ବିଜେକରି ଆସିବା ବେଳକୁ ଏ ପର୍ବତ ପାଖେ ବଣି ଚଢ଼ାଇ ଗୋଟୀଏ ମଣିମା ମଣିମା ବୋଲି ଏ ଗଛରୁଂ ସେ ଗଛରେ ବସଇ । ଏଥକୁ ରଜା ଆଗ୍ୟାଂ ଦେଲେ, ଏ ବଣି ଜେ ବକ୍ରକରି ଭକ୍ତି କରୁଅଛି, ଏଠାରେ କି ଅଛି ଦେଖ, ଏଥକୁ

ବଣ ଭିତରେ ଦେଖିଲେ ହରିଣ୍ୟଗର୍ଭ ଶମ୍ଭୁ ଗୋଟୀଏ ଅଛନ୍ତି । ଏଥକୁ ରଜା ପଚାରିଲେ ଏ ମହେଶଙ୍କ ନାଂକି । ଏଥକୁ ଏ ଗ୍ରାମ ଲୋକମାନେ କହିଲେ ଏଥି ସାମକେଶ୍ୱର ହୋଇ ମହେଶ ଥିଲେ, ବୋଲନ୍ତି । ଏଥକୁ ରଜା କହିଲେ, ବଣି ଜେ ଭକ୍ତି କରି ଡାକିଲା, ଏ ମହେଶଙ୍କ ନାମ ବଣିବକ୍ରେଶ୍ୱର ।

ଏପାଟେ ଲେମ୍ବାଇ ଦଣ୍ଡପାଟେ କାଲୁପଡ଼ା ବିଷ୍ଣୁସ୍ୱାମୀ ଲିଙ୍ଗ ଅଛନ୍ତି । ବିଝେଂଶ୍ୱରି ପୂର୍ବରେ , ଏ ପଶ୍ଚିମେ ସାଆଳା ପର୍ବତ ବେଟମାଳ ଏପାଖେ କନ୍ତିଆ ପର୍ବତ ପରଂଗ ଦଣ୍ଡପାଟରେ ଅରାଂଗଡ଼ ପର୍ବତ ଧଉଳି ପର୍ବତ ମଧକରି ସମସ୍ତ କନ୍ଦରା ମାଳରେ ସିଦ୍ଧ ବଉଦମାନେ ଚଉରାସି ଗୁମ୍ଫାରେ ଥିଲେ । ଏମାନେ ଯୋଗ ବଳରେ କରି ଭୂତ, ଭବିଶ୍ୟତ ବର୍ତମାନ କାଳ କଥା ଜାଣନ୍ତି । ଏ ବଉଦମାନ କଥାମାନ  ଏ ରଜାଙ୍କ ପାଟମହା**[17b]**ଦେବି ସୁଣିଥିଲେ ।

ଏକ ଦିନକରେ ରଜାରାଣିଙ୍କ କଥା ପ୍ରସଙ୍ଗେ କହିଲେ ବଉଧମାନେ ଜେ ଅଛନ୍ତି ଏମାନେ ସର୍ବଜ୍ଞ ସମସ୍ତ କଥାମାନ ଜାଣନ୍ତି । ଏମନ୍ତ ବୋଲି ସୁଣି ରଜା ବୋଇଲେ ବଉଧେ ଛାର କି ଜାଣନ୍ତି, ସେ ପାସଣ୍ଡି ବେଦବାହ୍ୟ ତାଙ୍କର ମୁଖାବଲୋକନ ନକରି । ବ୍ରାହ୍ମଣମାନେ ସବୁକାଳେ ବଡ଼ । ବ୍ରାହ୍ମଣ ବଳେ ଅମୋହା । ଏମନ୍ତକୁ ରାଣି ବୋଇଲେ, ପ୍ରଭୋ ! ବ୍ରାହ୍ମଣମାନଙ୍କୁ ବଉଧମାନଙ୍କୁ ଆଣି ପରିକ୍ଷା କର କିନା । କେ ବଡ଼ । ତାହା ବୁଝିବା । ଏଥକୁ ରଜା ଗୁପ୍ତ କରି ସର୍ପ ଗୋଟୀଏ ଆଣି ରଜା ରାଣି ଜାଣି ମାଠିଆ ଗୋଟିକେ ପୂରାଇଲେସ୍ତା ହାଣ୍ଡିମୁଦି ବଡ଼ ଅବକାସ ବେଳେ ଆସ୍ଥାନ ତଳେ ଥୋଇ ଭଟମିଶ୍ରମାନଙ୍କୁ ବଉଧମାନଙ୍କୁ ମଧ ହକରା କରି ଅଣାଇ ଆଗ ବଉଧମାନଙ୍କୁ ପଚାରିଲେ ଏ ଭାଣ୍ଡ ଭିତରେ କି ଅଛି । କହ । ବଉଧମାନେ କହିଲେ ମାହାରାଜା ଏ ହାଣ୍ଡି ଭିତରେ ଗୋଟୀଏ ସର୍ପ ଅଛି । ଏଥକୁ ରାଣି ଭିତରେ ଥାଇ ବୋଇଲେ ଠାକୁରେ ଲାଜ ପାଇଲେ । ଏଥକୁ ରଜା ବ୍ରାହ୍ମଣମାନଙ୍କୁ ପଚାରିଲେ, ଏ ହାଣ୍ଡିରେ କି ଅଛି କହ । ଏଥକୁ ବ୍ରାହ୍ମଣମାନେ ସମସ୍ତେ ବିଚାରିଲେ ବଉଧମାନେ ସର୍ବଜ୍ଞ ଏହାଙ୍କ କହିବାର ତ ମିଥ୍ୟା ନୁହଇ । ଆମ୍ଭେମାନେ କି କହିବା । କ୍ରୋଧରେ ସମସ୍ତେ ବୋଇଲେ ମହାରାଜା ଏ ହାଣ୍ଡି ଭିତରେ ଭସ୍ମଗୁଡ଼ାଏ ଅଛି ।ଏମନ୍ତ ସୁଣି ହାଣ୍ଡି ଫେଡ଼ୀ ଦେଖିଲେ ଭସ୍ମଗୁଡ଼ାଏ ଅଛି, ସର୍ପ ନାହିଁ । ଏହା ଦେଖି ରଜା ରାଣିଙ୍କି ବୋଇଲେ **[18a]** ବଉଧେ ବଡ଼ ବୋଲି । ବ୍ରାହ୍ମଣଙ୍କ ବଚନ ଦେଖିଲ ଟି କି । ଏ ଉତ୍ତାରେ ରଜା ବଉଧମାନଙ୍କୁ ମୁଣ୍ଡ ଛେଚ ବୋଲି ବୋଇଲେ । ଏଥି ଭିତରେ ଗୋଟାକେତେ ମୁଣ୍ଡ ଛେଚାକଲେ । ଆଉମାନେ ବୋଇଲେ ଆମ୍ଭେ ତ ମିଥ୍ୟା ନ କହିଲୁ । ବ୍ରାହ୍ମଣମାନେ କ୍ରୋଧରେ କରି ଶାପ ଦେଇ ସର୍ପକୁ ଭସ୍ମ କଲେ । ଏବେ ଜେଉଁ ତୁଣ୍ଡେ ଆମ୍ଭ ମୁଣ୍ଡ ଛେଚ ବୋଇଲ ସେ ତୁଣ୍ଡରେ ରଜାର କୃମି ପଡୁ ବୋଲି ଶାପ ଦେଲେ ।  ସମସ୍ତେ ଗୁମ୍ଫାମାନ ଛାଡ଼ି ମାହା ଅରଣ୍ୟ ଭିତରକୁ ଗଲେ ।

ଏ ଉତାରେ ସେ ରଜା ତୁଣ୍ଡରେ ବ୍ୟାଧି କରି କୃମି ପଡ଼ିଲେ । ଏଥକୁ ରଜା ଧର୍ମଶାସ୍ତ୍ରମାନ ଦେଖି ବୈଦ୍ୟଶାସ୍ତ୍ରମାନ ଦେଖି ଅନେକ ଦାନମାନ ଦେଲେ । ଅଭିଷ୍ଟମାନନ୍ତ

ଦେଲେ । ତେବେ ହେଁ ବ୍ୟାଧି ଭଲ ନୋହିଲା । ଏ ଉତାରେ ରଜା ସ୍ୱପ୍ନେ ଦେଖିଲେ ବ୍ରାହ୍ମଣ ଜଣେ ବୋଇଲା ରଜା ତୁମ୍ଭେ ପରମେଶ୍ୱରଙ୍କୁ ଭୂମିଦାନ ଦିଅ । ତୁମ୍ଭ କୃମିବ୍ୟାଧି ଭଲ ହୋଇବ । ଏଥକୁ ରଜା ପ୍ରତ୍ୟାଦେସ ପାଇଂ ପରମେଶ୍ୱରଙ୍କୁ ଜଳଧାରା ପୁର୍ବକ କରି ସଏ ବାଟି ଦେବାବେଳକୁ ରଜା ତୁଣ୍ଡରେ ସହସ୍ରେ ବାଟୀ ବୋଲି ଅଇଲା ।

ଏଥକୁ ଦେସ ଦେଲେ **ଲେମ୍ବାଇ** ଦଣ୍ଡପାଟେ ଥେଣ୍ଟାଣାଗ୍ରାମ ବା୨୮୭, ଖୋଲାରି ବା୧୮୭, ରେଞ୍ଚଗ୍ରାମ ବା୧୦୦।୪।୧୪, ମଣିଜପୁର ଗ୍ରାମ ବା୫୪।୮।୧୮, ପଟଣପୁରୀ ଗ୍ରାମ ବା୨୬।୨।୨୧, ସିଧପଡ଼ା ଗ୍ରାମ ବା୪୫।୯।୪, ଓଡତରବାଇ ଗ୍ରାମ ବା୭୦, ସୁଜନପୁର ଗ୍ରାମ ବା୨୪।୧୬।୧୭, ବା... ...,**[18b]** ପସିଲେ ଗ୍ରାମ ବା୫୭।୧୭।୭, ଗଉଡ଼କେରା ଗ୍ରାମ ବା୪୦।୮, ଗଉରିଦେଈପୁର ବା୨୮।୧୧।୧୩, ବଙ୍କିଲୋ ଗ୍ରାମ ବା୨୫।୧୫।୧୫, ବସନ୍ତପୁର ବା୭୦।୧୦, ବାସନରୋଆ ବା୫୪।୧୧।୧୦, ବିଳାସପୁର ବା୪୮।୧୦।୪, ଭଅଂସର ବା୧୪୦, ବାଲିଆକେରା ବା୬୦, ଗାଏ ଦେସ ଗୋ୧୮୯ ସବାକ୍ରାନ୍ତ ... ଦଣ୍ଡାଗୋପନ୍ଥ ପୋଖରି ପାଣିସର ୟ ଦେବତା ଦେସହେତା ମଧ ବା୩୭୨।୫।୪ ଥାଇ ରହଣି ଭୁମି ବା୧୦୦୦ ଦେଲା ଉତାରେ ରଜା ବ୍ୟାଧିମୁକ୍ତ ହୋଇଲା । ଏ ରାଇଜ ଭୋଗକଲେ ବରଷ ...

ଏ ଉତାରେ ଏହାଙ୍କ ପୁଅ **ରାଜେରାଜେଶ୍ୱରଦେବ** ରଜା ହୋଇଲେ । ଏ ମହାରାଜାଙ୍କର ପରମେଶ୍ୱରଙ୍କୁ ଦତ **ଲେମ୍ବାଇ** ଦଣ୍ଡପାଟେ ଅୟେଂଳାଓଡ଼ା ଗ୍ରାମ ବା।୨୩।୮।୯।୧୭, ବୋଲକଣା ଗ୍ରାମ ବା।୧୭୫।୫।୧୧ଦେଳାଗଂ ଗ୍ରାମ ବା୧୯।୧୪।୧୪ କଲ୍ୟାଣପୁର ବା୧୨୦।୭।୨ ମଙ୍ଗଳାଅଧଂ ବା୬୦୯ ଚୋପ ବା୪୦ ଗାଏ ପଦ୯ ଦେସ ଗୋ ୫୯ ସବାକ୍ରାନ୍ତ ଚକଡ଼ାଭୁମି ବା୭।୧୬।୧୯ଢ ନଈ ଦଣ୍ଡା ଗୋପନ୍ଥ ପୋଖରି ପାଣିସର ଦେବତା ଦେସହେତା ମଧ ଅସାଧତଳେ ଭୁମି ବା୧୦୯ ।୧।୬ ଥାଇ ରହଣି ଭୁମି ବା୬୦୪।୧୫।୧୩ ଦେଇ ଏ ରାଇଜ ଭୋଗକଲେ ବରଷ

ଏ ଉତାରେ ଏହାକଂ ବଡ଼ପୁଅ **ଛୋଟା ପୁରୁଷୋତ୍ତମଦେବ** ରଜା ହେଲେ । ଏ ପରମେଶ୍ୱରଙ୍କୁ ଦେଲେ **ଲେମ୍ବାଇ** ଦଣ୍ଡପାଟେ ପୁବତରବାଈ ଗ୍ରାମ ଗୋ୧୯ ବା୨୫ ପଛିମତରବାଇ ବା୪୦, ସହଜପାରି ଗ୍ରାମ **[19a]** ବା୧୨୦ ସାତକାଳିଆ ବା୩୦ ସାନନରେଆ ବା୨୫, ସିଙ୍ଘାରପୁର ବା୩୦, ମୁରଧୁନିପୁର ବା୩୦ ଆଏତନରୁ ... ଗ୍ରାମ ବା୧୦, ବୋକନରୁଆ ବା୧୫, ଆଗରଗୋ ବ୍ରାହ୍ମଣ ଆଲେଗଂ ଗ୍ରାମ ଗୋ୨୯ ବାଟି ୫୦, ମଣିଜପୁର ତୋଟା ଗୋ୧୯ ବା୪।୩।୫ ପଦ୯ ଦେସ ଗୋ୧୧୯ ଭୁମି ସବାକ୍ରାନ୍ତ ଚକଡ଼ା ବା୩୧୯।୩।୫ଢ ଅସାଧ ଦଣ୍ଡା ଗୋପନ୍ଥ ପୋଖରି ପାଣିସର ୟବ ଏ ଭୁମି ଦେବତା ଦେସ ହେତା ମଧ ହୋଇଂ ବା୮୦।୩।୫ ଥାଇ ରହଣି ଭୁମି ବା୨୭୭ ଦେଇଂ ରାଜ୍ୟକଲେ ବରଷ ...; ଗାଏ ଗଙ୍ଗବଂସ ପାଟ ୬୯ ମାହାପ୍ରଭୁଙ୍କୁ

ଦେଲେ ଲେମ୍ବାଇ ଦଣ୍ଡପାଟ ଦେସ ଗୋ ୩୯ ତୋଟା ଗୋଟୀକୁ ମଧ ସବାକ୍ରାନ୍ତ ଚକଡ଼ା ଭୂମି ବା ୩୧୧୮।୧।୨୩ଈ ଦଣ୍ଡା ଗୋପଛ ପୋଖରି ପାଣିସର ମଧ ବଏ ଭୂମି ଦେବତା ଦେସ ହେତା ମଧ ଭୂମି ବା୭୪୦।୨।୬ ଥାଇ ରହଣି ଭୂମି ବା୨୩୭୭।୧୯।୧୭ ଦେଇଂ ପରମେଶ୍ୱରଙ୍କୁ ସେବା କରି ରାଜ୍ୟ ଭୋଗ କଲେ ବରଷ ...।

## I.B.5 [ଅନଙ୍ଗଭୀମ ଚରିତ]

### I.B.5.1 [ଦେଉଳତୋଳା/ମନ୍ଦିର ନିର୍ମାଣ]

ଏ ରଜାଙ୍କ ଅବାହନ ଉତାରେ ଏ ରଜାଙ୍କ ଭାଇ **ଅନଙ୍ଗଭିମଦେଓ** ପରି...ସ... ନଗରି ଦଣ୍ଡପାଟେ ଆଣି ରଜା କଲେ ବାଙ୍କିଆ । ଶ୍ରୀ ଅନଙ୍ଗଭିମଦେବ ମହାରଜା ରଜା ହୋଇଲେ । ଏ ରଜା ନଗର ଚଉଦ୍ୱାର କଟକ କରି ବିଜେକରିଥାନ୍ତି । ଏମନ୍ତ ଏକ ଦିନକରେ ରଜା ବିଜେକରି ଆସି ମହାନଦି ପାରିହୋଇ ଏ ନଦି ଦଖିଣ ତିରେ ଦେଖିଲେ କୋଦିଣ୍ଡା ଦଣ୍ଡପାଟରେ ଦେଖିଲେ **[19b]** ବାରବାଟି ଗ୍ରାମରେ ବିଶ୍ୱେଶ୍ୱର ଦେବଙ୍କର ସନିଧେ ସାମଳ ପକ୍ଷିକି ବଗ ମାଡ଼ି ବସିଅଛି । ଏହା ଦେଖି ରଜାଏ ବଡ଼ ଆଶ୍ଚର୍ଯ୍ୟ ପାଇଲେ । ଶୁଭ ଯୋଗ ଦିନରେ ଏ ବାରବାଟି ଗ୍ରାମରେ ଶୁଭ ଦେଇଂ ନଅର ତୋଳାଇଂ କଟକ କରି ଏ କଟକ ନାମ ବାରଣାସି କଟକ ନାମ ଦେଇ ନଗର ଚଉଦୁଆର କଟକ ଛାଡି ଆସିକରି ରହିଲେ । ଏ ଉତାରେ ସଏ ବରଷ ଗଲା । ଏ ଭିତରେ ଏକ ଦିନକରେ ରାତ୍ରେ ପରମେଶ୍ୱରଙ୍କୁ ସପନେ ଦେଖି ଏ ପରମେଶ୍ୱରଙ୍କୁ ଦର୍ଶନ କରିବାକୁ ଶ୍ରୀପୁରୁଷୋତ୍ତମକ୍ଷେତ୍ରକୁ ବିଜେକରି ଆସି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଦରସନ କରି ସାଡ଼ି ପ୍ରସାଦ ଲାଗି ହୋଇ ଶ୍ରୀନବରେ ବିଜେକରି ମୁଦଲ କରାଇଲେ । ଏ ମୁଦଲ ଭାସାରେ ବିର ଶ୍ରୀଗଜପତି ଗଉଡ଼େଶ୍ୱର ନବକୋଟି କର୍ଣ୍ଣାଟକୂଳ ବରକେଶ୍ୱର ଅରିରାଏ ଭୁତଭଇରବ ଦୁସାହ ଦୁଃସାସନ ଅନିକରଣେ ରାଉତରାଏ ଅତୁଳବଳ ପ୍ରାକର୍ମ ସଂଗ୍ରାମେ ସହଶ୍ରବାହୁ କ୍ଷତ୍ରିଅକୁଳ ଧୂମକେତୁ ଶ୍ରୀଅନଙ୍ଗଭିମଦେବ ମହାରାଜାଙ୍କର ବିରଳ ୧୨ ଅଙ୍କ ଶ୍ରାହୀ ତୁଳ ଶୁକ୍ଳ ୫ ଶୁକ୍ରବାର ପୁରୁଷୋତ୍ତମ କଟକେ ଶ୍ରୀନବରେ ଦଖିଣଘରେ ଦେବାର୍ଚ୍ଚନ ଅବକାସେ ବିଜେ ସମୟେ ପାଶେ ପାତ୍ର ଦାମୋଦର ପଣ୍ଡା, ପାତ୍ର ଗଙ୍ଗାଧର ପଣ୍ଡା, ପାତ୍ର ଚକ୍ରଧର ପଣ୍ଡା, ପାତ୍ର ଜଗନ୍ନାଥ ପଣ୍ଡା, ପାତ୍ର ନୀଳକଣ୍ଠ ପଣ୍ଡା, ପାତ୍ର ଭିମକର ପଣ୍ଡା, ପାତ୍ର ଗୋପିନାଥ ପଣ୍ଡା, ପାତ୍ର ବଳଭଦ୍ର ପଣ୍ଡା, ପାତ୍ର ପୁରୁଷୋତ୍ତମ ଦାଶ ମିଶ୍ର ଜେନା ... ... **[20a]** ନରସିଂହଦେଓ ପରିରାଏ, ଅଜଇଦେଓ ପରିରାଏ, ଅନନ୍ତଦେଓ ପରିରାଏ, ଇଶ୍ୱରଦେଓ ପରିରାଏ, ଶତଦେଓ ପରିରାଏ, ହରିହରଦେଓ ପରିରାଏ, ରାମଦେଓ ପରିରାଏ ଶୁରପାନ ପାତ୍ର ଶୁପାଇ ଜିଅନ ଗୋରୋ ପାଞ୍ଜି ଘର ପରିକ୍ଷା ମିଥୁନ ପଣ୍ଡା ପରୋଶ୍ରୀକରଣ ମୁରଜୁ ଗୋରୋ ନାଏକ ମାରକଣ୍ଡ ମହାସେନାପତି ସମସ୍ତ ପାତ୍ର ଖଟନ୍ତା ବୁଢ଼ା ଲେକାଂ ଥାଇଁ ଗତ କନ୍ୟା ଦି୫ନ ଶୁ୫ ଗୁରୁବାର ଅଭିନବ ଜଜାତିନଗର ବିଷ୍ଣୁ

ଶ୍ରୀପାଦ ମୁଦଲେ ପୁରଚଉରି ନବରେ ବାଙ୍କିଆରେ ବିଜେ ସମୟ ଓଡିସା ରାଯ୍ୟ ଆଗ୍ୟାଂ ପ୍ରମାଣେ ଆନକରି ଭିଆଇଂ ପରୋଶ୍ରୀକରଣ ସୁରୁଙ୍କୁ ପରୋ ନାଏକ ମାରକଣ୍ଡ ମାହାସେନାପତି ପାଜିଂ ଧରି ଶ୍ରୀଚରଣ ଅଗ୍ରତେ ସୁଣାଇମା ବେଳକୁ ଶ୍ରୀ ଜଗନ୍ନାଥ ମାହାପ୍ରଭୁଙ୍କ ଭୋଗ ନିଯୋଗ ଭିଆଣକୁ ଆଗ ସୁଣାଣ ନୋହିଲାକୁ ଠାକୁରେ ସନ୍ତୋଷ ପାଇଲାକୁ ରାଜ୍ୟ ଭିଆଣ ପାଂଜି ସୁଣାଣ ନୋହି ଆଗ ପରମେଶ୍ୱରଙ୍କ ଭୋଗ ନିଯୋଗ ପରବଯାତ୍ରା କ୍ଷେତ୍ର ଦେବତାମାନଙ୍କ ପୂଜା ସେବକମାନଙ୍କ ସେବାନୀତି ... ଭାତ ମଧ କରି ନାରିକାଗା ସୁଣାଣ ସାରି ପଛେ ରାଜ୍ୟ ଭିଆଣ ପାଂଜି ସୁଣାଣ ହୋଇଲା । ପାଂଜିସୁଣାଣ ହୋଇଲା ଉତାରେ ଠାକୁରେ ଫୁରୁଣା ହୋଇ ଏମନ୍ତ ବୋଲି ତଲପ କରାଇଲେ । ଠାକୁରେ ଏମନ୍ତ ବୋଲୁ ଅଛନ୍ତି ଭୋ ଭବିସ୍ୟ ରାଜାମାନେ ଦେବତା ବ୍ରାହ୍ମଣଙ୍କୁ ବଳଭଣ୍ଡାରକୁ ରାଜନିତି ବଏକୁ ମଧକରି ମୁଁ ଯେ ...**[20b]** କରି ଭିଆଣ କରି ଭିଆଣ କରିଦେଉଅଛି ଏଥକୁ ତୁମ୍ଭେମାନେ ନପୁଣ ବୋଲ ସେ ଦେଇ ଗଲେ ଆମ୍ଭର କି ହୋଇଲା । ଆମ୍ଭେ କିପାଂ ଦେବୁ । ଏମନ୍ତ ନ ବୋଲିବ, ଓଡିସା ରାଜ୍ୟ ଜେ କେସରି ରାଜାମାନଙ୍କ ଆଦିକରି ଗଙ୍ଗବଂସେ ଆମ୍ଭ ଛ ପାଟ ସରିକି ରାଜ୍ୟ ଆୟେ ହୋଉଥିଲା ପୁର୍ବଦିଗେ ଅର୍କକ୍ଷେତ୍ରେ ସମୁଦ୍ର ତିରଠାରୁ ... ଭିମ ନଗରି ଦଣ୍ଡପାଟ ସରିକି । ଉତର ଦିଗେ ଆଏ ହୋଉଥିଲା । ଦକ୍ଷିଣ ମହୋଦଧି ଉତର ତିରଠାରୁଂ କାଅଂସ ସରିକି ଦଖିଣେ ଆଏ ହୋଉଥିଲା । ଉତର କାସାଂବାଶା ଠାରୁଂ ଦକ୍ଷିଣେ ଋଷିକୋଇଲା ନଦି ସରିକି ଜିତି ସୁନା ମା୨୦୦୦୦୦୦ ପୁର୍ବ ରଜାମାନଙ୍କ କାଳରେ ଆଏ ହୋଉଥିଲା ଜିତି ସୁନା ମା୧୫୦୦୦୦୦ ଆଏ ହୋଇଲାକୁ ଦେବତା ବ୍ରାହ୍ମଣଙ୍କୁ ନାନା ନିଯୋଗକୁ ବଳ ପୋସିବାକୁ ରାଜନିତି ଭଣ୍ଡାର ସଞ୍ଚୀବାକୁ ନାନା ବଏକୁ **[21a]** କରି ଭିଆଣ କରିଦେଲୁ ।

ଏହି ଖଣ୍ଡ ମଣ୍ଡଳ ହୋଇ ଆଏ ହୋଉଥିଲା । ଏମନ୍ତ ରାଜ୍ୟ ଶ୍ରୀଜଗନ୍ନାଥ ମାହାପ୍ରଭୁଙ୍କ ପଦାରବିନ୍ଦ ପ୍ରସାଦେ ବ୍ରାହ୍ମଣମାନଙ୍କ କଲ୍ୟାଣେ ବିଷ୍ଣୁଭକ୍ତିରେ କରି ଖଣ୍ଡାରେ ଜିଣିକରି ଭୁଇଁଆ ପୁରାଣମାନକୁ ଜଏ କରି ଅଧିକ ରାଜ୍ୟ ଆଏ କଲୁ । ଉତର ଦିଗେ କାଂସବାଂସ ଠାରୁ ଦନାଇବୁଢ଼ି ନଇ ସରିକି, ଦଖିଣେ ଆଏ କରି ଋଷିକୋଇଲା ନଦିଠାରୁ ରାଜମହିନ୍ଦ୍ରା ଦଣ୍ଡପାଟ ସିରିକି, ପଶ୍ଚିମେ ଆଏ କଲୁ ଭିମନଗର ଦଣ୍ଡପାଟଠାରୁ ବଉଦ ସିମା ସୁନୁପୁର ସରିକି, ଏ ତିନି ଦିଗ ମାରି ରାଜ୍ୟ ଆଏ କଲୁ ।

ଭୋ ମାହାରାଜାମାନେ ଏହା ଅନ୍ୟଥା ନ କରିବ ହରିଲାର ପାପ ତ ଶୃତି ସ୍ମୃତି ପୁରାଣ ମାନଙ୍କରେ ସୁଣୁଥିବ । ସ୍ମୃତି ବାକ୍ୟ ଏ -

ବହଭେବ ଶୁଭେ ଦତ୍ତା ରାଜଭିଃ ସଗରାଦିଭିଃ ।
ଯସ୍ୟ ଯସ୍ୟ ଯଦା ଭୂମୀ ତସ୍ୟ ତସ୍ୟ ତଦାଫଳଂ ॥
ତଦାଦାନ ପାଳନଯୋର୍ମଧେ ଦାନଚ୍ଛେୟୋଽନୁପାଳନଂ ପରଂ ।
ସ୍ୱଦତ୍ତାଦ୍ୱିଗୁଣଂ ପୁଣ୍ୟଂ ପରଦାନାନୁ ପାଳନଂ ।

ସ୍ୱଦତ୍ତା ପରଦତ୍ତା ବା ଯୋହରେୟୁବସୁଂଧରାଂ ।
ସ୍ୱବିଷ୍ଠାୟାଂ କୃମି ଭୂତ୍ୱା ପିତୃଭିଃ ସହ ପଚ୍ୟତେ ॥
ସ୍ୱଦତ୍ତଂ ପରଦତ୍ତଂ ବା ଯୋହରେୟୁବସୁଂଧରାଂ ।
ଷଷ୍ଠୀବର୍ଷ ସହସ୍ରାଣି ବିଷ୍ଠାୟାଂ ଜାୟତେ କୃମୀଃ ॥
ଦେବସ୍ୱ ପରିପୂର୍ଣ୍ଣାନି ବାହନାନି ବଳାନିଚ ।
କର୍ଯ୍ୟକାଳେ ବିଶୀର୍ଣ୍ଣନ୍ତେ ବାଲୁକା ସ୍ୱତଗୋ ଯଥା ॥

ଆରକ ଏମନ୍ତ କଥାଏ - ତ୍ରେତୟା ଯୁଗରେ ଶ୍ରୀରଘୁନାଥ ଦକ୍ଷିଣେ କାଞ୍ଚି ଶାସନ ବସାଇ ଯେମନ୍ତ ଆଜ୍ଞା ଦେଇଅଛନ୍ତି ତା ହିତ ସତ୍ତାର ପ୍ରସଙ୍ଗେ ସୁଣୁଥିବ । ଶ୍ରୀରଘୁନାଥ ଠାକୁରଙ୍କ ଆଜ୍ଞା ଏ ।

ଭୂୟୋଭୂୟୋ ଭାବିତୋ ଭୂମିପାଳାନତ୍ୱା ନତ୍ୱା ଯାଚିତେ ରାମଚନ୍ଦ୍ର ।
ସାମାନ୍ୟୋୟ ଧର୍ମ ସେତୁନୃପାଣା କାଳେ କାଳେ ପଳନୀୟୋ ଭବଭିଃ ॥୦॥

ଏ ପ୍ରକାରେ ଭୋ ରାଜାମାନେ ଶୃତି ସ୍ମୃତି ବଚନମାନ ଅପାର ହିତ ସୁଣୁଥିବ । ଏଥକୁ ଯେବେ ତୁମ୍ଭେମାନେ ବଳିୟାର ପଣକରି ଲୋଭ ବଶରେ ହରିବ ତେବେଂ ଶ୍ରୀଜଗନାଥ ମାହାପ୍ରଭୁଙ୍କ ଶ୍ରୀଚରଣକୁ ଦ୍ରୋହ **[21b]** କଲାର ଜେ ପାପ ତାହା ପାଇବ । ମୁଁ ଜାହା ଜେଉଂ ପ୍ରକାରେ ଭିଆଣ କରିଅଛି ଦେବତା ବ୍ରହ୍ମଣଙ୍କୁ ଭୋ୍ଗ କରାଇ ସେ ପ୍ରକାରେ ପରିପାଳନା କରୁଥିବ । ସାଆନ୍ତମାନଙ୍କୁ କଉଡ଼ି ଭାଙ୍ଗେ ବରତନ, ମାହାନ୍ତମାନଙ୍କୁ ରାଉତମାନଙ୍କୁ ଦସମାସି ଟଙ୍କା ବରତନ ବାଣୁଆ ପାଇକମାନଙ୍କୁ ଦସ ମାସି ଭୂମି ଭାଙ୍ଗେ ଓ ହୋରି ବରତନ ନିଯୋଗ ସେବକମାନଙ୍କୁ ଆଉ ସମସ୍ତ ସେବକମାନଙ୍କୁ ମଧ କରି ଭୂମିରେ ଜିତି ସୁନା ବରତନ ଦେଇ ପରିବାର ପୋସିଂଥିବ । ଭଣ୍ଡାର ସଞ୍ଚିବାକୁ ଜେଉଁ ପ୍ରକାରେ ରାଜ୍ୟରୁଂ ଘେନିମାକୁ ଭିଆଇଲା ଅଛି ସେ ପ୍ରକାରେ ଭଣ୍ଡାର ସଞ୍ଚୁଥିବ । ରାଜ୍ୟ ଜେଉଁ ପ୍ରକାରେ ଭୂଇଂ ତଳିରେ ମାଢ଼ ଫୁଲ କରି ସୁନା ଭିଆଇଲା ଅଛି, ସେ ପ୍ରକାରେ ପୁଷ୍ଟି ନଷ୍ଟୀ ଦେଖି କରି କର ଘେନି ପରଜାଙ୍କୁ ପରିପାଳନା କରି ପୃଥ୍ୱୀ ଭୋଗ କରି ସୁଖେ ସ୍ୱର୍ଗକୁ ଯିବ ।

ଭୋ ମାହାରାଜାମାନେ ! ସବୁଠାକୁ ଧର୍ମ ହିଁ ସେ କାରଣ । ରାଜଲୁ ଏମନ୍ତ ମୁଦଲ କରା କରାଇ ପାତ୍ରମାନଙ୍କୁ ଏମନ୍ତ ଆଗ୍ୟାଂ ଦେଲେ । ଭୂୟାଂ ପୁରାଣମାନଙ୍କୁଂ ଭୁଜରେ ଜଏ କରି ରାଜ୍ୟ ଜିଣି ଆଣି ବାହାରେ ଜେଉଁ ଭଣ୍ଡାର ଧନମାନ ଆଣି ହୋଇଲା ସୁନା ମା ୪୦୦୦୦୦୦ ରନ୍‌ମାନ ଆଣି ହୋଇଲା ମୁଲ ପ୍ରମାଣେ ମା୭୮୮୦୦୦ ଗାଏ ପଦ ୨୬ ମା୪୭୮୮୦୦୦ ଆଣି ହୋଇଲା ଏ ଆମ୍ଭର ଅର୍ଜିତ ପଦାର୍ଥ ଏଥୁ ଆମ୍ଭେ ଥୋକାଏ ପରମେଶ୍ୱରକଂ **[22a]** ଆଡ଼ତିରେ ଲଗାଇବୁଂ । ଏଥକୁ ଆମ୍ଭେମାନେ ଏମନ୍ତ କହନା କରିଅଛୁଂ ଜଜାତି ରଜା ଜେଉଂ ପାଟଂକ ତୋଳାଇଂ ପରମେଶ୍ୱରକୁଂ

ବିଜେ କରାଇ ଅଛନ୍ତି । ସେ ପାଟଳ ଗୋଟୀଏ ଅତି ବଇସମ ହୋଇଲା । ଏହା ଭାଜିଂ ସଏ ହାଥ ଉଚରେ ପ୍ରାସାଦ ଗୋଟୀଏ ତୋଳାଇବା । ପରମେଶ୍ୱରଙ୍କ ଆଏତନ ଭିତରେ ଦେବତାମାନଙ୍କଂ ଦେଉଳମାନ ଆନକରି ତୋଳାଇବା । ଏଥକୁ ଥୋକାଏ ସୁନା ଦେବା, ପରମେଶ୍ୱର ତଢ଼ାଉମାନ ଖଟଣି ଜୋଗାଡ଼ମାନଙ୍କୁଂ ମଧ କରି ଆଉ ନାନା ଆଡ଼ତି ମଧ କରି ଥୋକାଏ ସୁନା ରନ୍‌ମାନ ମଧ ଦେବା । ଏମନ୍ତ ଆମ୍ଭେ ବିଚାରି ଅଛୁଂ । ଏଥକୁ ପାତ୍ରମାନେ ଜଣାଇଲେ ଦେଓ ଏମନ୍ତ ଜେବେଂ ବିଚାରିବା ହୋଇଅଛି, ଏଡ଼େ ହୋଇ ତ କଥା ନାହିଁ, ଏକଥାକୁ ବଡ଼ ବେଗ ଅବଧାନ ହୋଉ, ''ଧର୍ମସ୍ୟ ତ୍ୱରିତା ଗତି'' ଧର୍ମ ବିଚାରିଲେ ବଡ଼ ବେଗ କରି, କେବଳ ଏତେ ଜଣାଉଅଛୁଂ, ପ୍ରାସାଦ ଜେ ସଏ ହାଥ ଉଚେଂ କରିବ ବୋଲି ବିଚାରିବା ହୋଉଅଛି ଶରୀର ନିତ୍ୟ ନୁହଇ ଏ ଅନିତ୍ୟ ଦେହ, ଏ ବହୁତ କାଳ ଲାଗିବ । ଏଥୁଂ ଦସହାଥ ତୁଟି ନଉହାଥ ହୋଇଂ ପ୍ରାସାଦ ହୋଇଲେ ବଡ଼ ବେଗ ହୋଇବ । ଏଥକୁ ରଜାଏ ଆଗ୍ୟାଂ ଦେଲେ ବିଚାରିଲାରୁଂ ତୁଟିଲେ ଦୋଷ ହୋଇବ ପରା । ଏଥକୁ ପାତ୍ରମାନେ ଜଣାଇଲେ ବିଘ୍ନ ହୋଇ ରହିଲେ ଯେ ସବୁ ହି ଅସାର ହୋଇବ । ଏଥକୁ ଠାକୁରେ ଆଗ୍ୟାଂ ଦେଲେ ହୋଉ ନଉହାଥରେ ପ୍ରାସାଦ ହୋଉ । ଏମନ୍ତକୁ ସିଳ୍ପିଶାସ୍ତ୍ରମାନ ଦେଖ । କେଉଁ ପ୍ରାସାଦେ... ହେ**[22b]**ଲେ ବିଷ୍ଣୁଯୋଗ୍ୟ, ଏଥକୁ ଭଟମିଶ୍ରମାନେ କହିଲେ ପ୍ରାସାଦ ଜେ ଛତିସ ପ୍ରକାର ଏଥୁଂ କୋଡ଼ିଏ ପ୍ରକାର ଶ୍ରେଷ୍ଠ । ଏଥି ଭିତରୁଂ ଶ୍ରୀବକ୍ଷଗଣ୍ଡ ସାଳ ହୋଇଂ ଜେଉଂ ପ୍ରାସାଦ ସେ ପ୍ରାସାଦ ହରିରି ବଡ଼ ପ୍ରିଅ । ଏହା ସୁଣି ରଜାଏ ଆଗ୍ୟାଂଦେଲେ ଏହି ପ୍ରାସାଦ ଉଜ କରାଇବା । ଏମନ୍ତ ଆଗ୍ୟାଂ ଦେଇ ମୁଦଲ କରାଇଲେ, ଏ ମୁଦଲ ଭାସା । ବିରଳ ୧୪ ଅଙ୍କ ଶ୍ରୀହୀ ବିଛା ଶୁ୭ ସୋମବାର ଶ୍ରୀ ପୁରୁଷୋତ୍ତମ କଟକେ ଶ୍ରୀନିଳସୁନ୍ଦର ଗିରି ଆଏତନ ଭିତରେ ବିର ମଣ୍ଡପରେ ବିଜେ କରିଥିବା ସମଏ ପାସେଂ ପାତ୍ର ପରମହଂସ ବାଜପେଇ ସର୍ବଜ୍ଞଏ ଘଡ଼ ମାସି ଦାମୋଦର ପୋରହିତ ମାହାପାତ୍ର ନିଳକଣ୍ଠ ରାଏଗୁରୁ ମାହାପାତ୍ର, ବଳଭଦ୍ର ପହରାଜ ମାହାପାତ୍ର ଜଗନ୍ନାଥ ଚଇନି ପାଟ ଜୋତିସ ମାହାପାତ୍ର ସମସ୍ତ ପାତ୍ର ଖଟନ୍ତା ବୁଢ଼ାଲେକାଂ ଥାଇଂ ରାଜଗୁରୁ ମାହାପାତ୍ର ଆଗ୍ୟାଂ ପ୍ରମାଣେ ଓଡ଼ିସା ରାଜ୍ୟରେ କିର୍ତ୍ତି ବିକ୍ଷାତ କରିବା ନିମିତେ । ଶ୍ରୀପୁରୁଷୋତ୍ତମ କ୍ଷେତ୍ରେ ଶ୍ରୀନିଳସୁନ୍ଦର ଗିରି ସିଖରେ ଅତି ବଇସମ ହୋଇଂଥିଲାର ପୁର୍ବ ପାଟଳ ଭାଜିଂ ଆନ କରି ତୋଳାଇବା । ଜଜମାନ ଶ୍ରୀହସ୍ତ କାଠି ଜେ ଉଛର୍ଗ ନଉ ହା୯ଥ ପ୍ରତି ହୋଇବ ପଚଂତାଳିସି ହା୪୫ଥ ଏଥୁଂ ବାଡ଼ ବହଳ ବାହାରେ ଭିତର ଗମ୍ଭରା ଓସାର ହୋଇବ ସୋଳ ହା୧୬ଥ ଏଥକୁ ଲାଗି ମୁଖ ସାଳି ଦେଉଳ ଗୋ୧ ଏ ପ୍ରକାରେ ଦେଉଳ ତୋଳା ହୋଇବ । ଏ ଦେଉଳ ତୋଳା ହୋଇବା ଜାଏ ପରମେଶ୍ୱରଙ୍କ **[23a]**ବିଜେ କରିଥିବାକୁ ଦେଉଳ ଉତର ଦିଗରେ ଲମ୍ବ ୯ ବଖରା ଓସାର ବଖରା ୩ ଏ ପ୍ରକାରେ ମଳୟଗିରି ମଣ୍ଡପ ଏଥକୁ ଲାଗି ତିନି ବଖରା ହୋଇ ସିଘପୃଷ୍ଟ ଘଟଣାରେ ରଥାଙ୍ଗ ମଣ୍ଡପ ଏ ପ୍ରକାରେ ମଳୟ ଗିରି ମଣ୍ଡପ ଉଜ ହୋଇବ ।

ଏଥକୁ ଆଗ୍ୟାଂ ପ୍ରାମାଣେ ମଳୟ ଗିରି ମଣ୍ଡପ ଜେ ହୋଇଂ ପ୍ରତିଷ୍ଠା କରି ପରମେଶ୍ୱରକୁଂ ଶୁଭ ଦିବସରେ ବିଜେ କରାଇ ଏ ମାହାରାଜାଙ୍କ ୧୫ ଅଙ୍କ ଶ୍ରୀହି ଫୁଗୁଣ ଶୁ ୧୦ ତହ୍ନାଳ ଏକାଦଶି ଗୁରୁବାର ବେଳ ଚଉଦଖୁରି ସଂପୁର୍ଣ୍ଣ ବୃଷ ଲଗ୍ନେ ଅବଜିତ୍ ମୁହୁର୍ତ୍ତେ ଅର୍ଘ ଦେଇ ଦେଉଳ ତୋଳାଇଲେ । ଏ ଦେଉଳକୁ ଲାଗି ମୁଖସାଳି ଦେଉଳ, ଏବଡ଼ ଦେଉଳ ତିନି ଦିଗରେ ବରାହ ନୃସିଂହ ତ୍ରିବିକ୍ରମ ତିନି ଦେବତାକୁଂ ୩୯ ନିସା ଦେଉଳ ଗୋ୩୯ ଗାଏ ଦେଉଳ ଚାରି ଗୋ୪ ଲିଗଂ ବଡ଼ ଦେଉଳ ଗୋ ୧ ଏ ଦେଉଳକୁ ଲାଗି ଝିକିଂରି ହୋଇଂ ମାଠ କମ ଜଗମୋହନ ମଣ୍ଡପ ଗୋ ୧ ଏ ଦୁଇ ପାଖେ ଚନ୍ଦ୍ର ସୁର୍ଯକୁଂ ମାଠ ରେଖ ଦେଉଳ ଗୋ ୨ ଏ ଦୁଇ ପାଖେ ଦେଉଳ ଇସାଣ ମୋଡ଼ କରିବାକୁ ଚିତ୍ରା ସ୍ୱାତି ଦୁଇ ନକ୍ଷତ୍ର ସଳଖକୁ ଦେଉଳ ଆଗେ ମାଠରେଖ ଦେଉଳ ଗୋ ୨ ଦକ୍ଷିଣ ଦିଗରେ ଅଗୁରୁ ବୃକ୍ଷ ବିଦାର ନୃସିଂହନାଥଦେବକୁଂ ଖଣ୍ଡସାଳ ଘଟନାରେ ଦେଉଳ ଗୋ ୧ ଏ ଦେଉଳ ଆଗରେ ପାଷାଣ ପିଢ଼ କାଠ କମ ଘଟଣ ନୃସିଂହନାଥ ମଣ୍ଡପ ଗୋ ୧ ଏ ନୃସିଂହନାଥ ଦେବକଂ ପଶ୍ଚିମ ଦିଗେ ନାଟାରମ୍ଭ ଗଣପତି ଦେବକୁଂ ମାଠରେଖ ଦେଉଳ ଗୋ ୧ ଏ ପଶ୍ଚିମେ ପରିକ୍ଷା ଭୋଗ **[23b]** ନିଜୋଗ ଘେନିମାକୁ କାଠ କମ ପାସାଣ ପିଢ଼ର ଅଟା ମଣ୍ଡପ ଗୋ ୧ ଏ ପଶ୍ଚିମେ ସିଦ୍ଧ ପୀଠ ବିମଳାକ୍ଷି ଦେବିକିଂ ମୁଖସାଳି ଲାଗି ଦେଉଳ ଗୋ ୧ ଏ ଉତର ଦିଗେ ସରସ୍ୱତି ଦେବିକିଂ ମୁଖସାଳି ଲାଗି କଳା ପାସାଣର ମାଠରେଖ ଦେଉଳ ଗୋ ୧ ଏ ଉତରେ ରତାଇ ଦେବିକିଂ ମାଠରେଖ ଦେଉଳ ଗୋ ୧ ଏ ଉତରେ ଶ୍ରୀମାହାଲକ୍ଷ୍ମୀ ଦେବି ଠାକୁରାଣିକିଂ ନଳଣି ଘଟନାରେ ମୁଖସାଳି ଲାଗି ଦେଉଳ ଗୋ ୧ ଏ ପୁର୍ବେ ଇନ୍ଦ୍ର ଦେବତାକୁଂ ଦେଉଳ ଗୋ ୧ ଏ ଆଗେଂତି ରହି ମଣ୍ଡପ ଗୋ ୧ ଏ ଆଗେଂ ପଶ୍ଚିମ ମୁଖ ହୋଇ ସଷ୍ଠିଦେବିକିଂ ଦେଉଳ ଗୋ ୧ ଈସାନ କୋଣେ ଦେବସ୍ନାନ ମଣ୍ଡପ ୧ ଏ ଉତର ଦିଗେଂ ଈଶାନେଶ୍ୱର ଦେବକୁଂ କଇଳାସ ଘଟନାରେ ଦେଉଳ ଗୋ ୧ ଏ ଉତରେ ଉତରାଇ ଦେବିକିଂ ସାନ ଦେଉଳ ଗୋ ୧ ବଟ ବୃକ୍ଷଠାରେ ବଟେଶ୍ୱର ଦେବକୁଂ ମାଠରେଖ ଦେଉଳ ଗୋ ୧ ବଟମଗଂଳା ଦେବିକିଂ ଭଦ୍ରାକାର ସାନ ଦେଉଳ ଗୋ ୧ ବଟଗଣପତି ଦେବକୁଂ ଦେଉଳ ଗୋ ୧ ବଟ ବୃକ୍ଷକୁଂ ପାସାଣ ଚଉରା ଗୋ ୧ ଅନନ୍ତ ପୁରୁଷୋତ୍ତମ ଦେବକୁଂ ମାଠ ରେଖ ଦେଉଳ ଗୋ ୧ କାମ... କ୍ଷତ୍ରପାଳ ଦେବକୁଂ ମାଠରେଖ ଦେଉଳ ଗୋ ୧ ଦେଉଳ ଆଏତନ ଚାରି ଦୁଆରେ ବାଇସି ପାବଛ ସତାଇସି ପାବଛ ଏକୋଇସି ପାବଛ, ଉଣୋଇସି ପାବଛ, ମେଘନାଦ ଚାରି ପାଚେରି ଏ ଚାରି ଦୁଆରେ ଗୁମୁଟ ଦେଉଳ ଗୋ୪ ଏ ଚାରି ଦୁଆରେ ଜଏ ବିଜଏ, ଚଣ୍ଡ ପ୍ରଚଣ୍ଡ, କୁମୁଦ କୁମାଦକ୍ଷ, ନନ୍ଦ ସୁନନ୍ଦ, ଅଷ୍ଟ **[24a]** ପାରସଦ ୮ ଦେବତା ଗୋ୮ ସାନ ଦେଉଳ ଆଠ ଗୋ୮ ସିଙ୍ଘଦ୍ୱାରକୁ ସିଙ୍ଘ ଗୋ୨ ବଡ଼ଦାଣ୍ଡ ଠାରେ ଚାର ଅନକୁଳ ନିମନ୍ତେ ଗଣପତି ଦେବକୁଂ ଦେଉଳ ଗୋ ୧ ଗାଏ ପଦ ଠିକ ସାନ ବଡ଼ ଦେଉଳ ଗୋ୪୦ ଶ୍ରୀବଡ଼ଦେଉଳ ଗୋ ୧ ଦେବାତାମାନଙ୍କୁଂ ଦେଉଳ

ଗୋ୨୫ ପାଚେରି ଦୁଆର ଦେଉଳ ଗୁମୁଟ ଗୋ୪ ଗାଏ ଗୋ୨୯ ମଣ୍ଡପ ଗୋ୫ ପାବଛ ଗୋ୪ ଚାରିଦିଗେ ମେଘନାଦ ପାଚେରି ଗୋ୪ ଦେବତା ଘଟଣ ବଡ଼ଦେଉଳ ଦିସା ଦେବତା ଗୋ୩ ନାଟ ଆରମ୍ଭ ଗଣପତି ଚାରପତି ୯ ଗୋ୨ ଅଷ୍ଟ ପାରସବ ଦେବତା ଗୋ୮ ଗାଏ ଦେବତା ଗୋ୧୩ ସିଙ୍ଘ ଗୋ୨ ଗାଏ ପଦ ୫୮ ।

ଦେଉଳ ଘଟଣାକୁ କନକ ମଣୋଇ ସୁନା ଆବରଣକୁ ବିଜେ କରିବା ସିଂହାସନ ଛାମୁ ଦୁଇଖଣ୍ଡ ୯ ମଧକରି ଏ ଆଦରସକୁ ଭିତର ଗମ୍ଭରା ଦୁଆର ରୁପାକପାଟ ରୁପାକିରଣକୁ ଶ୍ରୀଅଗଂ ଭିତର ଆବରଣକୁ ସିଂହାସନେ ବିଜେ କରିବାକୁ ସୁନାଚକା ସିକିଳି ଅଧଂଣା କାଚଂନ ଭାଜକୁ ଅଙ୍ଗାଭରଣ ତଢାଉକୁ ଧୁପ ତ୍ରିକାଳ ପୁଜାକୁ ସୋଡ଼ସ ଉପଚାର ପାତ୍ରମାନକୁଂ ରାଜୋପଚାର ଜୋଗାଡ଼ମାନକୁଂ ଖଟଣି ସୁନାରୁପା ଜୋଗାଡ଼ମାନ ଘଟଣକୁ ଖଟ ପାଲଙ୍କୀ ବିମାନଖଟ ଦୋଳି ଖଟୁଲି ଘଟଣକୁ କନକ ଦଣ୍ଡ ଛତ୍ର ଘଟଣକୁ ରାଜନିତି ବିଧି ଛତ୍ର ଚାମରକୁ ମଧକରି ଦେଉଳ ପ୍ରତିଷ୍ଠା ବିଧି କି ସୁନା ଥିବାକୁ ମଧ କରି ସମସ୍ତ ଆଡ଼ତିକି ମଧ ରହିଲା ଦକ୍ଷିଣ ରାଜ୍ୟରୁଂ ଜଏ କରି ଆଣିଥିଲାର ଭୁଜ ସୁନା ମା୪୭୮୮୦୦୦ ସ୍କନ୍ଧରୁଂ ଆଗ୍ୟାଂ [24b] ପ୍ରମାଣେ ନିଳକଣ୍ଠ ରାଏ ଗୁରୁ ମାହାପାତ୍ର ମୁଦଲେ ସୁନା ପେଟିଆ ଗୋ୧୩୫ ଅକଂ ମୋହୋଡ଼ ପେଟିଆ ଗୋ୨୫୦ ଏ ଗୋ୧୦ ମାଢ଼ ୮୦୦୦ ଲେଖାଏ ମାଢ଼ ୨୦୦୦୦୦ ବିଜେ ମୋହୋଡ଼ ପେଟିଆ ଗୋ୧୦୦ ଏ ଗୋ୧୦ ମାଢ଼ ୧୦୦୦ ଲେଖାଏ ମାଢ଼ ୧୦୦୦୦ ସୁନା ମତେ ପେଟିଆ ଗୋ୧୦୦୦ ଏ ଗୋ୧୦ ମାଢ଼ ୧୦୦୦୦ ଲେଖାଏ ସୁନା ମା୧୦୦୦୦୦୦୦ ଲେଖାଏ ପଦ ୩୦ ପେଟିଆ ଗୋ୧୩୫୦ ସୁନା ମାଢ଼ ୧୨୧୦୦୦ ତଢ଼ାଉମାନରେ ଲାଗିବାକୁ ରତ୍ନମାନ ଦେଲା ମୁଲ ପ୍ରମାଣେ ମାଢ଼ ୪୦୦୦୦ ଗାଏ ପଦ୨ ଅଙ୍କ ମୋହୋଉ ପେଟିଆ ଗୋ୨୫୦ ଏଗୋ ୧୦ ମାଢ଼ ୮୦୦୦ ଲେଖାଏ ମାଢ଼ ୨୦୦୦୦୦ ବିଜେ ମୋହୋଡ଼ ପେଟିଆ ଗୋ୧୦୦ ଗୋ୧୦ ମାଢ଼ ୧୦୦୦ ଲେଖାଏଁ ମାଢ଼ ୧୦୦୦୦ ସୁନା ମତେ ପେଟିଆ ଗୋ୧୦୦୦ ଏ ଗୋ୧ ମାଢ଼ ୧୦୦୦୦ ଲେଖାଏଁ ସୁନା ମା୧୦୦୦୦ ଗାଏ ପଦ ୩ ପେଟିଆ ଗାଏ ପଦ ୨୦ ସୁନା ରତ୍ନ ମଧ କରି ସୁନା ମାଢ଼ ୧୨୫୦୦୦୦ ଦେଇ ନିଳକଣ୍ଠ ରାଏଗୁରୁ ମାହାପାତ୍ର ମୁଦଲେ ତଲପ ଏ ସୁନା ଏ ପରମହଂସ ବାଜପେଇ ମୁଳେ ଦେଆହୋଇବ । ଏ ପରମହଂସ ବାଜପେଇ ଶ୍ରୀପୁରୁଷୋତ୍ତମ ଦେଉଳ ତୋଳାଇବ । ପରମେଶ୍ୱରକଂ ଭୋଗ ନିଜୋଗ ମଧ କରି ସମସ୍ତ ଆଡ଼ତି ଭିଆଣ କରିବ । ଏ ଆଡ଼ତିରେ ଚରଚା କରିବା ନିମିତେଂ ଏହାଠାରେ ସଏ ଅଂସୁଆର ସହସ୍ରେ ଲୋକ ବାଣୁଆ ପାଇକ ଥିବ । ଏ ଆଡ଼ତିରେ ଭୁଂଇଆ ପୁରାଣମାନକୁଂ ଦଣ୍ଡପାଟ ବୋହୋରାମାନକୁଂ ସେଠାକୁ ପତ୍ର କାଟିବେ । ଏ ପତ୍ର ପ୍ରମାଣେ ସମସ୍ତେ ହେଁ ଆଡ଼ତି କରିବେ । ଏ ନିମିତେଂ ଏ ପରମହଂସ ବାଜପେଇକିଂ ମାହାପାତ୍ର ପଣେ ସାଡି ଦେଇ

ଶ୍ରୀପୁରୁଷୋତ୍ତମ ଦେଉଳ ପରିକ୍ଷାପଣ ଦେଲୁଂ । ଏ ଦେଉଳ ତୋଳା ହୋଇଂ ମହୋପଚାର ବିଧିରେ ପ୍ରତିଷ୍ଠା ହୋଇଂ ପରମେଶ୍ୱର ଦେଉଳେ ବିଜେକରି ମାହାହବି ଭୋଗ ମୁଣୋହି ଉତାରେ [25a] ଠାକୁରେ ବନ୍ଦାପନା ଦରସନ କରି ଗଦି ପ୍ରସାଦ ଲାଗି ଉତାରେ ଏ ପରମହଂସ ବାଜପେଇ ମାହାପାତ୍ର ମାହାଦାନ ପାଇବ । ସାସନ ବସାଇବାକୁ ଦେସ ପାଇବ ସୁନା କୁମ୍ଭ ପଲବାରୁ ଚଢ଼ିବ । ସୁଆରୁଂ ଧବଳ ଛତି ଧରାଇବ । ଛାମୁରେ ଆସନ ପଡ଼ା ମାଡ଼ି ବସିବ । ଏଥକୁ ଏ ବାଜପେଇ ମାହାପାତ୍ର ନାଏ ପରିକ୍ଷା ... ହୋଇଂ ସାଡି ପାଇଲା ଉତାରେ ଶ୍ରୀପୁରୁଷୋତ୍ତମ ଦେସଲୋକଙ୍କୁ ଚୋପ ଖଣ୍ଡୁଆଇତି ଦେଲା । ଏ ଖଣ୍ଡୋଆଇତି ଭାସା । ଶ୍ରୀପୁରୁଷୋତ୍ତମକ୍ଷେତ୍ର ବାଆନ ମଠ ସନ୍ୟାସି ଉଭୟ ଖଣ୍ଡ ମୁଦହସ୍ତ ଉଭୟଖଣ୍ଡ ଗ୍ରାମମାନର ତେରସତ ମାହାଜନ ଶ୍ରୀଜଗନ୍ନାଥ ଦେବକଂର ସେବକ ବ୍ରାହ୍ମଣ ସୁଦ୍ର ଚଉଦ ଶତ ପ୍ରକ... ..ଆନ୍ତି । ଶ୍ରୀପୁରୁଷୋତ୍ତମ ଦେଉଳ ଦେଉଳ ପରିକ୍ଷାପଣ ଜେ ପରମହଂସ ବାଜପେଇ ମାହାପାତ୍ରକୁଂ ଦେଲୁ । ଏହାକୁ ଘେନି ପରମେଶ୍ୱରଙ୍କ ଭୋଗ ନିଯୋଗ ଘେନାଇବୁ । ଯଥାବିଧି ପ୍ରମାଣେ ଭୋଗରାଗ ପରବ ଯାତ୍ରାମାନ କରାଇବୁ । ଏ ପରମହଂସ ବାଜପେଇ ମୁଳେ ଜେ ବାରଲକ୍ଷ ପଞ୍ଚାସ ସହଶ୍ର ମାଢ଼ ଭୁଜ ସୁନା ବେଲା ଅଛି । ଏ ବାଜପେଇ ମାହାପାତ୍ର ପରମେଶ୍ୱରକଂର ପୁରୁଣା ପାଟଳ ଭାଜିଂ ନୁଆ କରି ନଉ ହାଥରେ ପ୍ରାସାଦ ତୋଳାଇବ । ନାନା ଦେବତାମାନକୁଂ ଦେଉଳମାନ ମଧ ତୋଳାଇବ । ଏ ଦେଉଳ ହୋଇବା ଜାଏ ପରମେଶ୍ୱରଙ୍କ ବିଜେ କରିଥିବାକୁ ମଳୟ ମଣ୍ଡପ ଗୋଟାଏ କାଠର ଉଜ କରାଇବ । ତଢ଼ାଉମାନ ଘଟଣ [25b]...ଣି ଜୋଗାଡ଼କୁ ଖଟ ପଲକଂ ମଧ କରି ସବୁ ଘଟଣ କରାଇବାକୁ ସୁନା ବେଲା ଅଛି । ଏଥକୁ ଭିଆଣ ପତ୍ର ଦେଖି ଏହାକୁ ଘେନି ଆଡ଼ତି କରିବୁ । ଏଥକୁ ଏ ବାଜପେଇ ମାହାପାତ୍ର ଦେଉଳକୁ ଆସି ରାଜ ଆଗ୍ୟାଂ ଲଗାଇଂଲା ଉତାରୁଂ ଦେସଲୋକମାନେ ପରିକ୍ଷାକୁ ଘେନି ଜଗମୋହନ ଦ୍ୱାରେ ଉଭାହୋଇ ସାଢ଼ୀ ଦେବାକୁ ଅଇଲେ ଚାଙ୍ଗଡ଼ାରୁଂ ଲାଗିରୁଂ ମାହାପାତ୍ର ନିମିତେଂ ଖଣ୍ଡୁଆ ମୃ୧ କାନ୍ଧକୁ ତଡ଼ପ ମୃ୧ ଗାଏ ମୃ୨ କରଡ଼ିଆ ମୁଦୁଲି ଖଟିଲାର ଭଣ୍ଡାରୁଂ ଅଣସର ଚନ୍ଦନ ବାଟିବ ତାଏ । ଗଉଡ଼ ବିସୋଇ ଖଟିଲା ଦହି ପଟୋଇ ଗୋଟୀଏ ୧ ଗୁଡ଼ିଆ ବିଶୋଇ ଖଟିଲା ବଡ଼ ସାକର ପଟୀଏ । ଏମାନ ଭଣ୍ଡାରୁଂ ଥାଳି ପଟକେ ଥୋଇ ଭିତର ଭଣ୍ଡାର ମେଇକାପ ଆଣି ଖଟିଲା ଉତରେ ଆୟା ମାହାଜନ ପରିକ୍ଷାକୁ ସାଢ଼ି ବଢ଼ାଇ ଦେଇ ଚନ୍ଦନ କପୋଳେ ଦେହରେ ବୋଳି ହୋଇଂ ଦହି ପଟୋଇ ସାକର ହାଥକୁ ବଢ଼ାଇ ଦେଲାକୁ ପରିକ୍ଷା ମଥାରେ ଲଗାଇଲା ଉତରେ ପୁଷ୍ପାଞ୍ଜଳି ମଣ୍ଡାଟୁଳ ଭଣ୍ଡାର ମେଇକାପ ଖଟିଲା । ଧୂପ ପାଦୁକ ସଙ୍ଗନାଳରେ କ... ... ହଡ଼ପ ନାଏକ ମୁଣୋହି ହୋଇଲାର ଗୁଆ ଗୁଆଇତି ପାନ ଖଟିଲା । ଏ ଉତାରେ ପଣ୍ଡା ପଶୁପାଳେକ ଖୁଣ୍ଟିଆ ମଧ ହୋଇଂ ସମସ୍ତ ସେବକମାନେ ପ୍ରସାଦ ଦେଲେ । ପରିକ୍ଷା ହାଥ ଧୋଇବାକୁ

ଗରେଆବଢୁ ଝରି ଖଟିଲା । ହାଥ ଧୋଇଂ ହାତ ପୋଛିବାକୁ ଚାଂଗଂଡ଼ା ମେଇକାପ ଖଦି ଖଟିଲା । ଏ ଉତାରୁ ଦେସ ...[26a] ...ରେ ମୁଦ ମୁଦିଦେଲେ । ଭଣ୍ଡାରୁଂ ସୁନାବେତ ଆଣି ଲେକାଂ ଆଣିଲା । ପରିକ୍ଷା ପରମେଶ୍ୱରକୁଂ ଦରସନ କଲା ଉତାରେ ବେତ ଧରି ପଟୋଆର କଲା ଉତାରେଂ ଲେକାଂ ପରିବାରେ ମଣାଣ ଡାକ ଡାକିଲେ । ଆସ୍ତାନ ପଢ଼ିଆରି ପଟୋଆର କଲା । ଏ ଉତାରୁଂ ପାଳିଆ ପଢ଼ିହାରି ପରିକ୍ଷାକଂ ପଛେ ଥାଇ ପ୍ରସାଦମାନ ସାଇତିଲା । ଏ ଉତାରୁ ପରିକ୍ଷାର ଅଟା ମଣ୍ଡପରେ ବେହୋରଣ କରି ସମସ୍ତ ପ୍ରକରଣମାନଙ୍କ ପରିମୁଖେ ଭିଆଣ ନିଯୋଗ ବିସେଇମାନ ଖିରିଭୋଗ ନିଯୋଗ ଭଲ ମନ୍ଦ ବୁଝି ଭିଆଣ ପ୍ରମାଣେ ତୁଳପଳ ମାପ କରି ନିଯୋଗ ଦରସୋଆଇ ଘେନାଇଲା । ଏ ଉତରୁଂ ଦେସ ଲୋକକୁଂ ପର କରଣମାନକୁଂ ଦେଉଳୁ ସାଡି ଦେଇ ଉଆସକୁ ଜିବାବେଳକୁ ଆଗରେ ସଙ୍ଖ ମହୁରି ନାନା ବାଦ୍ୟମାନ ବାଜିଲା । ପଛେ ଘୋଡ଼ା ଉପରେ ଧୋଲଦମା ବାଜିଲା । ସମସ୍ତ ପରିବାରମାନେ ଗହଣ ଖଟି ଉଆସରେ ପରବେସ କରି ଲେକାଂ ପରିବାରେ ସାଡି ପାଇଂ ଜେ ଜାହା ସେବା ସେ ଖଟିଲା ।

ଏ ଉତରୁଂ ପରମହଂସ ବାଜପେଇ ମାହାପାତ୍ର ନଅର ଭଣ୍ଡାରୁଂ ସୁନା ଆଣି ସୂର୍ଯ୍ୟ ଦେଉଳ ଭଣ୍ଡାରେ ଥୋଆଇ ଶ୍ରୀନଅର ବେହୋରଣେ ସମସ୍ତ ପାତ୍ରମାନକୁଂ ପରୋଶ୍ରୀକରଣମାନକୁଂ ପରିମୁଖେ ଏ ସୁନା ଜେତେ ଜେତେ ଆଡ଼ତିରେ ଲାଗିବ ସମସ୍ତ ଆଡ଼ତିକି ଭିଆଣ କରି ଶ୍ରୀଚରଣ ଅଗ୍ରତରେ ସୁଣାଇଲା ।

ଦେଉଳ ଘଟନା ସୁଆଁସ ଆଡ଼ତିରେ ଲାଗିବ ସୁନା ମା୧୦୦୦୦୦୦ଢ଼ ବଡ଼ଦେଉଳ ଗମ୍ଭରା ଭିତର ବିଜେ କରିବା [26b] ସିଂହାସନ ଏ କନକ ମଣ୍ଡୋଇ ଏ ଛାମୁ ଦୁଇଖମ୍ବ ଆବରଣକୁ ସୁନା ମା୧୦୦୦୦୦ଢ଼ ଏ ଗମ୍ଭରା ଦୁଆର ଛାମୁ କପାଟ ରୁପା ଆବରଣକୁ ରୁପା ମା୩୦୦୦୦୯ ରହିଲା ସୁନା ମା୬୦୦୦ଢ଼ ଶ୍ରୀଅଙ୍ଗରେ ଚନ୍ଦନ ପାଣି ନ ପସିବାକୁ ଅଣସର ଜାଡ୍ରାରେ ଟାଟି ଭିତରେ ଲାଗି ହୋଇବେ ସୁନା ପଖିଆ ଗୋ୩୯ ଶ୍ରୀବଳରାମଦେବଙ୍କ ମା୧୦୦୦ଢ଼ ... ଶ୍ରୀଶୁଭଦ୍ରାଦେବିକଂ ଗୋ୧୯ ମାଢ଼୭୦୦ ଶ୍ରୀ ଜଗନାଥଦେବଙ୍କ ଗୋ୧ ମା୧୩୦୦ଢ଼ ଗାଏ ଗୋ୩ଟି ମାଢ଼ ୩୦୦୦ ଏ ଶ୍ରୀଅଗଂ ଭିତରେ ଖଞ୍ଜାବାଗିଆମାନକୁଂ ମା୧୦୦୦ଢ଼ ଶ୍ରୀସୁଦରସନଦେବକଂ ଶ୍ରୀଅଗଂ ଭିତରକୁ ସୁନା ଚକ୍ର ଗୋ୧୯ ମା୧୦୮ଢ଼ ଗାଏ ପଦ ୩୯ । ଶ୍ରୀଅଗଂ ଭିତରେ ପଶିବାକୁ ଥିବ ମା୧୦୮ଢ଼ ସିଘାଂସନେ ବିଜେ କରିବାକୁ ମୁଗୁନି ପାସାଣ ଚକାରେ ସୁନାବେଢ଼ ହୋଇବ ଚକା ଗୋ୪ଞ ଶ୍ରୀବଳରାମଦେବକଂ ଗୋ୧୯ ମା୧୦୦୦ଢ଼ ଶ୍ରୀସୁଭଦ୍ରାଦେବିକଂ ଗୋ୧୯ ମା୭୦୦ଢ଼ ଶ୍ରୀଜଗନ୍ନାଥଦେବକଂ ଗୋ୧୯ ମା୧୩୦୦ଢ଼ । ସୁଦର୍ଶନଦେବକଂ ଗୋ୧୯ ମା୩୦୦ଢ଼ ଗାଏ ସୁବର୍ଣ୍ଣ ଚକା ଗୋ୪୯ ସୁନା ମା୩୩୦୦ଢ଼ ଶ୍ରୀଅଗେଂ କଟି ଭାଗେ ଲାଗି ସିଂହାସନ ... ... ପଛ ଆଡ଼େ ଖଞ୍ଜା ହୋଇବାକୁ ସୁନା ସିକୁଳି ଅନ୍ଧଣା ଗୋ୩୯

ଶ୍ରୀବଳରାମଦେବକଂର ସାତସରିଆ ସିକୁଳି ଅନ୍ଧଣା ଗୋ୧ ମାଢ଼ ୭୨୦, ଶ୍ରୀସୁଭଦ୍ରାଦେବିକଂର ପାଂଚସରିଆ ସିକୁଳି ଗୋ୧ ଅର୍ଧଣା ଗୋ୧ ମାଢ଼ ୪୮୦, ଶ୍ରୀଜଗନ୍ନାଥଦେବକଂର ନବ ସରିଆ ସିକୁଳି ଅନ୍ଧଣା ଗୋ୧ ମାଢ଼ ୯୬୦ ଗାଏ ସିକୁଳି ଅନ୍ଧଣା ଗୋ୩ ସୁନା ମାଢ଼... [27a] ଲଲାଟ ପାଟି ଖଞ୍ଜା ହୋଇବାକୁ ସିଂହାସନ ବାଡ଼ରେ ଲାଗିବ କାଂଚନରାଜ ଗୋ୧୨ ଶ୍ରୀବଳରାମଦେବକଂ ଗୋ୪ ମା୧୫୦ଢ଼ ଶ୍ରୀସୁଭଦ୍ରାଦେବିକଂ ଗୋ ୪ ମା୧୦୦ଢ଼ । ଶ୍ରୀଜଗନ୍ନାଥଦେବକଂ ଗୋ୪ ମା୨୦୦ଢ଼ ଗାଏ କାଚଂନରାଜ ଗୋ୧୨ ମାଢ଼ ୪୫୦ ଅଗଂଆଭରଣ ତଢ଼ାଉ ମୃ୧୨ । ଶ୍ରୀବଳରାମଦେବକଂର ତଢ଼ାଉ ମୃ୬ ଲଲାଟ ପାଟିରେ ଲାଗି ହୋଇବାକୁ ସୁନାମାଠ ରାହୁରେଖା ମୃ୧ ମାଢ଼ ୧୦୦ ଏ ଦୁଇ ପାଖରେ ହରିତାଳ ରେଖାପାଟି ମୃ୨ ମା୧୫୦ଢ଼, ଗାଏ ମୃ୩ ମା୨୫୦ଢ଼ ଏ କପୋଳେ ଲାଗି ହୋଇବାକୁ ନିଳାନାଏକ ମାଣିକ ଅନୁନାଏକର ଓସକ ପରବ ଚିତା ଗୋ୧ ସୁନାମାଢ଼ ୮୦ ମାଠ ମକର କୁଣ୍ଡଳ ଜୋ୧ ମା୭୦ଢ଼ ଗାଏ ମୃ୬ ସୁନା ମା୪୦୦ଢ଼ ।

ଶୁଭଦ୍ରାଦେବିକଂ ଲାଗିକି ତଢ଼ାଉ ମୃ୮ ଲଲାଟ ପାଟିରେ ଲାଗି ହୋଇବାକୁ ରାହୁରେଖାପାଟୀ ମୃ୧ ମା୭୦ଢ଼ ହରିତାଳ ରେଖାପାଟୀ ମୃ୨ ମାଢ଼ ୮୦ ଗାଏ ମୃ ୩ ମା୧୫୦ ଏ କପୋଳରେ ଲାଗି ହୋଇବାକୁ ମାଣିକ ନାଏକ ନିଳାବେଢ଼ ରତ୍ନ ସଂଜଡ଼ିତ ଚଉକଣ ରେଖାଚିତା ମୃ୧ ମାଢ଼ ୭୦ ସୁନାମାଠ ତଢ଼ାଉ ମୃ୨ ମା୫୦ଢ଼ ହୃଦୟ ଭିତରକୁ କୁଚ ଗୋ୨ ମାଢ଼୬୦ ଗାଏ ମୃ୮ ମା୩୩୦

ଶ୍ରୀଜଗନ୍ନାଥଦେବକଂ ଲାଗିକି ତଢ଼ାଉ ମୃ ଲଲାଟ ପାଟିରେ ଲାଗି ହୋଇବାର ରାହୁରେଖ ପାଟୀ ମୃ୧ ମାଢ଼୧୦୦ ଏ ଦୁଇ ପାଖ [27b] ହରିତାଳ ରେଖାପାଟି ମୃ୨ ମା୧୫୦ ଗାଏ ମୃ୩ ମା୨୫୦ ଏ କପୋଳେ ଲାଗି ହୋଇବାକୁ ମାଣିକ ନାଏକ ମର୍କତ ଅନୁନାଏକ ହୀରାବେଢ଼ ନାନା ରତ୍ନରେ ଜଡ଼ିତ ଓଶକ ପରବ ଚିତା ଗୋଟୀ୧ ସୁନା ମାଢ଼୨୨୦ ମାଠ ମକର କୁଣ୍ଡଳ ଗୋ୧ ମା୮୦ ହୃଦୟ ଭିତରେ ଥିବାକୁ ଲକ୍ଷ୍ମୀ ପ୍ରତିମା ଗୋ୧ ମା୮୦ ଗାଏ ମୃ୬ ମା୬୫ ଗାଏ ପଦ ୩ ତଢ଼ାଉ ମୃ୨ ୧ ରାହୁରେଖା ହରିତାଳ ରେଖାକ୍ଷର ମୃ୯ ମା୬୫୦ ରତ୍ନ ଲାଗି ଚିତା ଗୋ୩ ମା୨୫୦, ମୋକର କୁଣ୍ଡଳ ଗୋ୪ ମା୧୫୦, ତଢ଼କି ଗୋ୨ ମା୫୦, କୁଚ୍ ଗୋ୨ ମା୬୦, ଲକ୍ଷ୍ମୀ ପ୍ରତିମା ଗୋ୧ମା୮୦ ଗାଏ ମୃ୨୧ ସୁନା ମାଢ଼ ୧୨୪୦ ନିତ୍ୟାଭରଣ ତଢ଼ାଉ ଲାଗି ହୋଇବାକୁ ରତ୍ନ ...ଡ଼ିତ ତଢ଼ାଉ ମୃ.. ଏଥକୁ ରତ୍ନ ବାହାରେ ସୁନା ଏତେ ତୋଳା,

ଶ୍ରୀବଳରାମଦେବକଂ ଲାଗିକି ଚୁଳ ଗୋ୧ ସୁନା ମା ୭୦ ଏ ଚୁଳରେ ଖଞ୍ଜା ସୁନା କେତକି ପାଖୁଡ଼ା ଗୋ୧୨ ମାଢ଼୧୦୦ ଗାଏ ମୃ ୧୩ ଚୁଳ ମୃ୧

ଏ ରୁପେ ସୁନା ମା୮୦୦ଢ଼ ଏଥିରେ ରତ୍ନ ଜଡ଼ିତ ସପତ ଫଣା ଗୋ୧୯ ସୁନା ମା୧୫୦୦ ଏ ସପତ ଫଣାରେ ଖଞ୍ଜା ହୋଇ ଲାଗି ହୋଇବାକୁ ରତ୍ନ ଜଡ଼ିତ ପଞ୍ଚସାଖା ମୁକୁଟ ଗୋ୧୯ ମାଢ଼୮୦୦ ଏ ତଳକୁ ରତ୍ନ ଜଡ଼ିତ ଅଳକାପାଟି ଗୋ୧୯ ମା୧୦୦ ଏ ତଳେ ରତ୍ନ ଜଡ଼ିତ ଅଧାଚନ୍ଦ୍ର ଗୋ୧୯ ମା୬୦ କପାଳ ପାଟୀ ଦୁଇ ପାଖରେ ରତ୍ନ ଜଡିତ ତରାଟ ଫୁଲ ଗୋ୬୯ ମା୬୦ଢ଼ ଏ ପାଖେ ରତ୍ନ ଜଡ଼ିତ କର୍ଣ୍ଣ ଅବତଂସ ଅଷ୍ଟ ପାଖୁଡ଼ା ଫୁଲ ଗୋ...**[28a]** ତଳେ ମା... ଏ କର୍ଣ୍ଣାଞ୍ଚଳ ଗୋ୨୯ ସୁନା ମା୫୦୦, ଏ କର୍ଣ୍ଣାଞ୍ଚଳ ଗୋ୨୯ ଛଟା ପାଖେ ସୁନା ନରାଜ ପସିଂ ଏ ନରାଜରେ ରତ୍ନ ଜଡ଼ିତ ସୁନାଫୁଲ ଗୋ୮୯ ମଧ କରି ମା୮୦ ଏ କର୍ଣ୍ଣାଞ୍ଚଳ ତଳେ ରତ୍ନ ଜଡ଼ିତ ମକର କୁଣ୍ଡଳ ଗୋ୨୯ ମା୧୦୦ ଏ ମକର କୁଣ୍ଡଳ ତଳେ ଖଞ୍ଜା ବଡ଼ ମୁକୁତା ଗୋ୮ ଲାଗିଂ ମୋଡ଼ିଆ ଗୋ୨୯ ମା୨୦ ଶ୍ରୀଅଙ୍ଗରେ କଣ୍ଠ ଦେସରେ ହୃଦୟରେ କଣ୍ଠାମାଳ ହାରମାଳ ଚାପସରି ପଦକମାନ ସଲଖ ହୋଇ ରହିବାକୁ ସୁନା ମାଠ ହୃଦୟ ଭୂଷଣ ଗୋ୧୯ ସୁନା ମାଢ଼ ୪୦୦। ଏ ଉପରେ ଅଧର ତଳେ ଲାଗି ହୋଇବାକୁ ମୁକ୍ତା ଚାପିସରି ଗୋ୧୯ ଏ ରତ୍ନ ବସିବା ଆସନ ଖଞ୍ଜା ଗୁଣା ଖାଲକଣ୍ଠା ଛେପର ମୁଁହ... ଗୋ୮୦ ରତ୍ନ ଜଡ଼ିତ ସୁନା ବାଘ ନଖ ଗୋ୧ ମାଣିକ ନାଏକ ମୁକୁତା ଜାଲି ପଦକ ଗୋ୧ ହିରାସାର ପଦକ ଗୋ୧ ନାନା ରତ୍ନ ଲାଗି ଅଧାଚ୍ନ୍ଦ୍ର ପଦକ ଗୋ୧ ହିରାମୁକ୍ତା ଲାଗି ସଙ୍ଖାକୃତି ପଦକ ଗୋ୧ ନବଗ୍ରହ ପଦକ ଗୋ୧ ଗୋମେଧ ନାଏକ ପଦକ ଗୋ୧ ମାଣିକ ନାଏକ ପଦ କେଂସର ପଦକ ଗୋ୧, ଗାଏ ପଦକ ଗୋ୧୦ ଏ ପଦକମାନ ରହି ବସିବା ଆସନ ଲମ୍ବଣା ସୁକୁଳି ସୁତାମ୍ଭ କରି ଜଉ ରତ୍ନ ବାହାରେ ସୁନା ମା୧୦୦୦ ରତ୍ନଫୁଲ ଗୋ୩ ଲାଗି ତିଖଣ୍ଡି ଓଡ଼ିଆଣି ଗୋ୧୯ସୁନା ମା୨୦୦ ଏ ତଳେ ଲାଗି ହୋଇବାକୁ ରତ୍ନ ଜଡ଼ିତ ଘଣ୍ଟି ଘାଗୁଡ଼ି ଲାଗି କଟୀମେଖଳା ଗୋ୧୯ ସୁନା ମା୩୦୦ ଏ ତଳେ ଲାଗି ହୋଇବାକୁ ରତ୍ନ ଜଡ଼ିତ.. ବିମ୍ୱମାଳ ଗୋ୧୯ ମା୪୦୦... ... ରତ୍ନ **[28b]** ଜଡ଼ିତ ବୈଜୟନ୍ତି ମାଳା ଗୋ୧୯ ମା୩୦୦

ଶ୍ରୀଭୁଜରେ ଲାଗିହୋଇବାକୁ ସୁନାର ଶ୍ରୀଭୁଜ ଗୋ୨୯ ସୁନା ମା୧୦୦୦ ଏ ଭୁଜ ମୂଳରେ ଲାଗି ହୋଇବାକୁ ମୁକୁତା ସର ଲବଙ୍ଗ ଦୁଇପଟକୁ ମା୩୦୦ ଏ ପାଖେ ଲାଗି ହୋଇବାକୁ ରତ୍ନ ଜଡ଼ିତ ଖନ୍ଧର୍ବବଳା... ଦୁଇପଟକୁ ମା... ରତ୍ନ ଜଡ଼ିତ... ମା୧୨୦୦... ଭୁଜ ଅଙ୍ଗୁଷ୍ଠିମାନକେ ଲାଗି ହୋଇବାକୁ ରତ୍ନ ଜଡ଼ିତ ମୁଦି ଦସ ଗୋ୧୦୯ ସୁନା ମା୫୦ ସୁନାମାଠ ପଦ୍ମହସ୍ତ ଗୋ୨୯ ମା୩୦୦

ଶ୍ରୀପୟର ଗୋ୧୯ ମା୧୮୦୦ଢ଼ ଏ ଶ୍ରୀପୟରେ ଖଞ୍ଜୀବାକୁ ଜାଉଳି ପାହୁଡ଼ ଦୁଇପଟକୁ ମା୫୦୦ ଗାଏ ତଢ଼ାଉ ମୃ୭୧୯ ଜଉ ରତ୍ନ ବାହାରେ ସୁନା ମା...ଢ଼ ଆୟୁଧ ଚାରି ମୃର୍ତ୍ତି ଏ ବାମ ହସ୍ତେ ଧରିବାକୁ ସାମର୍ଥକ ହଳ ଗୋ୧୯ ରତ୍ନ ବାହାରେ ସୁନା ମା୪୦୦ ଦକ୍ଷିଣ ହସ୍ତେ ଧରିବାକୁ ସୌନନ୍ଦି ମୁସଳ ଗୋ୧୯ ରତ୍ନ ବାହାରେ ସୁନା ମା୪୦୦ ଏ ଅଣ୍ଟାରେ ଖଞ୍ଜାହୋଇବାକୁ ଛୁରି ଖଣ୍ଡା ମୃ୨୯ ରତ୍ନ ବାହାରେ ଖାପମୁଣି

ମଧ୍ୟ ସୁନା ମା୧୫୦ ଗାଏ ଆୟୁଧ ମୃ୪୮ ସୁନା ମା୯୫୦ ଏ ଦୁଇ ଶ୍ରୀଭୁଜ ତଳେ ଧରିବାକୁ ସୁନାଖଣ୍ଡି ଗୋ୨୮ ମା୭୫୦ ଗାଏ ତଢ଼ାଉ ମଧ୍ୟ କରି ମୃ୭୭୮ ଜଉ ରତ୍ନ ବାହାରେ ସୁନା ମା ଚଉଦ ହଜାର ତିନିସ ୧୪୩୦୦ଢ଼

ଶ୍ରୀଶୁଭଦ୍ରାଦେବିକଂ ଲାଗିକି ତ୍ରିମୁଣ୍ଡିରେ ଲାଗିହୋଇବାକୁ ରତ୍ନ ଜଡ଼ିତ ସୁବର୍ଣ୍ଣ କବରି ଗୋ୧୮ ସୁନା ସହଶ୍ରେ ମା୧୦୦୦ । ଏ ତଳେ ପଞ୍ଚଶାଖା ମୁକୁଟ ଗୋ୧୮ ମା୪୦୦ ଏ ତଳେ ରତ୍ନ ଜଡ଼ିତ ଝୁମ୍ପା ଲାଗି ଅଳକା **[29a]** ଗୋ୧୮ ମା୮୦, ଏ ତଳେ ରତ୍ନ ଜଡ଼ିତ ଅଧାଚନ୍ଦ୍ର ଗୋ୧୮ ମା୫୦ ଏ ଦୁଇପାଖେ ସାନ ତରାଟ ଫୁଲ ଗୋ୬୮ ମା୩୦, ରତ୍ନ ଜଡ଼ିତ କର୍ଣ୍ଣାବତଂସ ଫୁଲ ଗୋ୨୮ ମା୭୦ ଏ ତଳେ କର୍ଣ୍ଣାଞ୍ଚଳ ଗୋ୧୮ ମା୨୦୦ ଏ କର୍ଣ୍ଣାଞ୍ଚଳ ଦୁଇପାଖେ ସୁନା ନରାଜ ପସି ନରାଜରେ ରତ୍ନ ଜଡ଼ିତ ଗୋ୬ଟୀ ମଧ୍ୟ କରି ମାଢ଼ ୩୦ କର୍ଣ୍ଣାଞ୍ଚଳ ତଳେ ରତ୍ନ ଜଡ଼ିତ ଚନ୍ଦ୍ର ଗିରିଆ ତାଟକଂ ଗୋ୨୮ ମାଢ଼ ୬୦ ଏ ଦେବିକଂ ଶ୍ରୀଅଗଂରେ ପଦକ କଣ୍ଠାମାଳ ସଳଖେ ଲାଗି ହୋଇବାକୁ ହୃଦୟରେ ଲାଗି ହେବାକୁ ସୁନା ମାଠ ହୃଦୟ ଭୂଷଣ ଗୋ୧୮ ମାଢ଼ ୨୦୦ ଏ ଉପରେ ଅଧର ତଳେ ଲାଗି ହୋଇବାକୁ ମୁକୁତା ଚାପସରି ଆସନକୁ ଗୁନ୍ଥାଗୁଣା ଖୀଲ ଖୀଲକଣ୍ଠା ଛେପର ମୁଁହକୁ ମଧ୍ୟ କରି ସୁନା ମାଢ଼ ୬୦ ରତ୍ନ ଜଡ଼ିତ ହରିଠା ମାଳ ଗୋ୧୮ ମା୮୦ ଦୋସରି ସୁନା କଣ୍ଠାମାଳି ଗୋ୧୮ ମା୩୦ ଏ ତଳେ ନାନା ରତ୍ନ ନାଏକ ପଦକ ଗୋ୫୮ ମାଢ଼ ୩୦୦ ତିଖଣ୍ଡୀ ଓଡ଼ିଆଣି ଗୋ୧୮ ମା୧୨୦ ଏ ତଳେ ରତ୍ନ ଜଡ଼ିତ ଘଣ୍ଟୀ ଘାଗୁଡ଼ି ଲାଗି କଟିମେଖଳା ଗୋ୧ ମା୧୫୦ ରତ୍ନ ଜଡ଼ିତ ପଦ୍ମମାନ ... ... ମା୧୫୦ ରତ୍ନ ଜଡ଼ିତ... ... ପଦକ ଗୋ୧୮ ମା୧୮୦ ଶ୍ରୀପୟର ଗୋ୨୮ ମା୬୦୦ ଶ୍ରୀପୟର ଖଞ୍ଜା ପାହୁଡ଼ ଗୋ୨୮ ସୁନା ମା୧୦୦ ଏ ବଳା ପଟ୨୮ ମା୧୦୦ ଏ ଅଗୁଂଷ୍ଠିମାନଙ୍କରେ ଖଞ୍ଜୀବାକୁ ରତ୍ନ ଜଡ଼ିତ ମୁଦି ଗୋ୧୦୮ ସୁନା ମା୫୦ ଗାଏ ତଢ଼ାଉ ମୃ୫୧୮ ସୁନା ମା୪୧୪୦

ଶ୍ରୀଜଗନ୍ନାଥଦେବକଂ ଲାଗି... ... ଚୁଳ ଗୋ୧୮ ରତ୍ନ ଜଡ଼ିତ ଜ**[29b]**ଉ ବାହାରେ ସୁନା ମା୮୮୦ ଏ ଖଞ୍ଜା ହୋଇବାକୁ ସୁନା କେତକି ପାଖୁଡ଼ା ଗୋ୧୨୮ ମା୧୨୦ ଗାଏ ପଦ ୨୮ ମୃ୧୩୮ ଚୁଳ ଗୋ୧୮ ମୃ୧୩୮ ମାଢ଼ ୧୦୦୦ ଏ ତଳେ ନାନା ରତ୍ନ ଜଡ଼ିତ ସପ୍ତସାଖ ଜଗମୋହନ ମୁକୁଟ ଗୋ୧୮ ମା୧୨୦୦ ଏ ତଳେ ରତ୍ନ ଜଡ଼ିତ ଝୁମ୍ପାମାନ ଲାଗି... ... ଅଳକାପାଟି ଦୁଇ ଆଡ଼ରେ ରତ୍ନ ଜଡ଼ିତ ତରାଟ ଫୁଲ ଗୋ୮୮ ମା୧୨୦ ଏ ପାଖେ ରତ୍ନ ଜଡିତ ଅଷ୍ଟପାଖୁଡ଼ା କର୍ଣ୍ଣ ଅବତଂସ ଗୋ୨୮ ମା୧୦୦ ଏ ତଳେ ମାଠ କର୍ଣ୍ଣାଞ୍ଚଳ ଗୋ୨୮ ମା୭୦୦ ଏ କର୍ଣ୍ଣାଞ୍ଚଳ ପାଖେ ସୁନା ନରାଜ ପସିଂ ଏ ନରାଜରେ ଖଞ୍ଜା ହୋଇବାକୁ ରତ୍ନ ଜଡ଼ିତ କାନଫୁଲ ଗୋ୮୮ ମା୮୦ ଢ଼ କର୍ଣ୍ଣାଞ୍ଚଳ ତଳରେ ରତ୍ନ ଜଡ଼ିତ ମକର କୁଣ୍ଡଳ ଗୋ୨ ମା୧୫୦, ଏ କୁଣ୍ଡଳେ

ଖଞ୍ଜାକୁ ବଡ଼ ମୁକୁତା ଗୋ୮ ଲେଖାଏ ଲାଗି ମୋଡ଼ିଆ ଗୋ୨୯ ମା୨୦ ଚିତା ଉପରେ ରତ୍ନ ଜଡ଼ିତ ଅଧାଚନ୍ଦ୍ର ଗୋ୧ ମା୮୦ ଶ୍ରୀ ଅଗଂରେ ପଦକ କଣ୍ଠାମାଳ ମାନ ସଲଖେ ରହିବାକୁ ସୁନା ମାଠ ହୃଦୟ ଭୂଷଣ ଗୋ୧୯ ମା୫୦୦ ଏ ଉପରେ ଅଧର ତଳେ ଲାଗି ହୋଇବାକୁ ରତ୍ନ ଜଡ଼ିତ ମୁକୁତା ଚାପସରି ଗୋ୧୯ ଏ ରତ୍ନ ବସିବା ଆସନ ଖଞ୍ଜାଖୀଲ କଣ୍ଠା ଛେପର ମୁଁହ ମଧ କରି ସୁନା ମା୧୦୦ ଏ ତଳେ ମୁକୁତାହାର ମାଳରେ ଥିବା ସୁନାକଣ୍ଠା ସୁନା ମା୪୦ ଏ ତଳେ ରତ୍ନ ଜଡ଼ିତ ସୁନା ହରିଠା କଣ୍ଠିମାଳ ଗୋ୧୯ ମା୧୫୦ ଏ ତଳେ ଦୋସରି ସୁନା କଣ୍ଠାମାଳ ଗୋ୧୯ ମା୮୦ ଏ ତଳେ ନାନା ରତ୍ନ ଜଡ଼ିତ ପଦକ ଗୋ୧୫ଢ଼ ମାର୍କତ ନାଏକ ନାନାରତ୍ନ ଲାଗିକରି କଉସ୍ତୁଭ **[30a]** ମଣି ପଦକ ଗୋ୧୯ ଏ ଗୋପିନାଥ ନାଏକ ପଦକ ଗୋ୧ଟୀ ଏ ରାମାବିଷେକ ପଦକ ଗୋ୧, ଅରୁଣମଣ୍ଡଳ ପଦକ ଗୋ୧, ହିରା ନାଏକ ଚନ୍ଦ୍ରମଣ୍ଡଳ ପଦକ ଗୋ୧, ବୈଡୂର୍ଯମଣି ପଦକ ଗୋ୧, ମାଣିକ ନାଏକ ମୁକ୍ତାବେଢ଼ ଚକ୍ରାକୃତି ପଦକ ଗୋ୧, ପଦ୍ମରାଗ ମାଣିକ ନାଏକ ପଦକ ଗୋ୧, ହିରା ମୁକୁତାବେଢ଼ ନିଳା ନାଏକ ନକ୍ଷତ୍ରମାଳୀ ପଦକ ଗୋ୧, ନାନାରତ୍ନ ଲାଗି ବିରଳାକ୍ଷ ଧ୍ୱଜ ପଦକ ଗୋ୧, ଜାଲିମୁକୁତା ପଦକ ଗୋ୧, ଲକ୍ଷ୍ମୀ ପ୍ରତିମା ନାଏକ ପଦକ ଗୋ୧, ନିଳାଲାଗି ଭ୍ରମର ପଦକ ଗୋ୧, ଗଙ୍ଗାଜଳ ପଦକ ଗୋ୧, ହିରାବେଢ଼ ମାଣିକ ନାଏକ ପଦ୍ମକେସର ପଦକ ଗୋ୧, ଗାଏ ନାନା ରତ୍ନ ଜଡ଼ିତ ପଦକ ଗୋ୧୫୯। ଏ ଜଉ ରତ୍ନ ବାହାରେ ଏ ପଦକମାନର ଆସନ ଲମଣା ସୁକୁଳି ସୁତା ମଧ କରି ସୁନା ମା୧୫୦୦ । ଏ ତଳେ ଅଣ୍ଟାରେ ଖଞ୍ଜା ହୋଇବାକୁ ତ୍ରିଖଣ୍ଡି ରତ୍ନ ଫୁଲ ଗୋ୩ ଲାଗି ଓଡ଼ିଆଣି ଗୋ୧୯ ସୁନା ମା୧୫୦ ଏ ତଳେ ରତ୍ନ ଜଡ଼ିତ ଘଣ୍ଟି ଘାଗୁଡ଼ି ଲାଗି କଟି ମେଖଳା ଗୋ୧ ସୁନା ମା୩୦୦ ଏ ତଳେ ରତ୍ନ ଜଡିତ ଛେପର ମୁଂହ ପଦ୍ମମାଳ ଗୋ୧ ମା୪୦୦ ଏ ତଳେ ମୁକୁତା କଦମ୍ଵମାଳ ଗୋ୧୯ ମା୫୦୦ ଏ ତଳେ ସୁନା ବଡ଼ ପଦ୍ମଫୁଲ ୧୦୮ ଗୋଟିରେ ସୁନା ଚନ୍ଦ୍ରମାନରେ ବଡ଼ ହିରା ନାଏକ ମୁକୁତା ବେଢ଼ ଅଷ୍ଟରତ୍ନ ନାନା ରତ୍ନ ବେଢ଼ମାନରେ ଇଡ଼ିତ ହୋଇ ଛେପର ମୁଁହ ଲାଗି ହାଲୁକା ବଇଜୟନ୍ତି ଚନ୍ଦ୍ରମାଳି ଗୋ୧୯ସୁନା ୧୦୦୦ମାଢ଼ ଭୁଜରେ ଲାଗିହୋଇବାକୁ ପଦ୍ମଭୁଜ ଗୋ୨୯ ମା୩୦୦ ଆୟୁଧ ଧରିବା ନିମନ୍ତେ ବଡ଼ ଶ୍ରୀ...ଙ୍କା ୧୯ ସୁନା ମା୧୦୦୦ ଏ ଭୁଜ **[30b]** ମୁଳରେ ଖଞ୍ଜାକୁ ... ମା୩୦୦ ଏ ପାଖେ ଖଞ୍ଜାକୁ ରତ୍ନ ଜଡ଼ିତ ଗନ୍ଧର୍ବ ବଳା ପଟ ୨୯ ମା୪୦୦ ବାହୁ ମୁଳେ ଲାଗି ହୋଇବାକୁ ରତ୍ନ ଜଡିତ ବାହୁଟୀ ପଟ ୪୯ ସୁନା ମା୧୫୦୦ ଶ୍ରୀଭୁଜ ଅଙ୍ଗୁଷ୍ଠିମାନରେ ଖଞ୍ଜୀବାକୁ ରତ୍ନ ଜଡ଼ିତ ମୁଦି ଗୋ୧୦୯ ସୁନା ମା ୫୦ ଶ୍ରୀପୟର ଜୋ୧ଡ଼ ସୁନା ମା୧୮୦୦ ଏ ଶ୍ରୀପୟରେ ଖଞ୍ଜାହୋଇବାକୁ ରତ୍ନ ଜଡ଼ିତ ଜାଉଁଳି ପାହୁଡ଼ ଗୋ୨୯ ମା୪୫୦ ଗାଏ ତଢ଼ାଉ ମୃ୭୭୯ ରତ୍ନ ଜଉ ବାହାରେ ସୁନା ମା୧୪୪୭୦ ଆୟୁଧ ମୃ୪ଢ଼ ବାମ ହସ୍ତରେ ଧରିବାକୁ ହିରା ମୁକୁତାରେ ଜଡ଼ିତ ଡ଼ହାଣାବର୍ତ୍ତକ

ପାଞ୍ଚଜନ୍ୟ ଶଙ୍ଖ ଗୋ୧୵ ସୁନା ମା୫୦୦ ଦକ୍ଷିଣ ହସ୍ତରେ ଧରିବାକୁ ସୋଳ ଅର ହିରାବେଢ଼ ମଣ୍ଡଳି ନାନା ରତ୍ନରେ ଜଡ଼ିତ ସୁଦର୍ଶନ ଚକ୍ର ଗୋ୧୵ ଜଉ ରତ୍ନ ବାହାରେ ସୁନା ମା୫୦୦ ଅଣ୍ଟାରେ ଖଞ୍ଜା ହୋଇବାକୁ ଛୁରି ଖଣ୍ଡା ମୃ୨୵ ରତ୍ନ ଜଡ଼ିତ ମୁଠି ଖାପ ମଧକରି ମୃ୬/୭୵ ମା୧୫୦ ଗାଏ ଆୟୁଧ ମୃ୪ ମା୧୧୫୦ ଏ ତଢ଼ାଉମାନ ଲାଗି ହୋଇଥିବା ବେଳକୁ ଶ୍ରୀଭୁଜ ତଳେ ଧରିବାକୁ ସୁନାଖୁଣ୍ଟୀ ଗୋ୨ ସୁନା ମା୭୫୦ ଏ ରୁପା ଆସନ ଗୋ୨ ରୁପା ମା୧୦୦୦୵ ସୁନା ମା୨୦୦ ଗାଏ ପଦ ୵ ମା୯୫୦ ଗାଏ ପଦ ୵ ତଢ଼ାଉ ମଧ କରି ମୃ୮୧୵ ଜଉ ରତ୍ନ ବାହାରେ ସୁନା ମା୧୬୨୭୦

ଶ୍ରୀସୁଦରସନ ଦେବଙ୍କ ଲାଗିକି ରତ୍ନ ଜଡ଼ିତ ତ୍ରିସାଖ ଚୂଳ ମୁକୁଟ ଗୋ୧୵ ସୁନା ମା୭୦୦ ଗାଏ ପଦ୵ ତଢ଼ାଉ ମୃ୨୧୦୵ ସୁନା ମା୩୫୩୦ଢ଼ ପଦକେ ରତ୍ନ ଜଡ଼ିତ ଚୂଳ ଗୋ୩୵ ସୁନା ମା୧୮୦୦ ସପତ**[31a]**ଫଣା ଗୋ୧ ସୁନା ମା୧୫୦୦ ରତ୍ନ ଜଡ଼ିତ କବରି ଗୋ୧୵ ସୁନା ମା୧୦୦୦ ରତ୍ନ ଜଡ଼ିତ ମୁକୁଟ ଗୋ୪୵ ମା୩୧୦୦ ରତ୍ନ ଜଡ଼ିତ ତରାଟଫୁଲ ଗୋ୧୮୵ ମା୨୧୦ ରତ୍ନ ଜଡ଼ିତ ଅଳକାପାଟୀ ଗୋ୩୵ ସୁନା ମା୩୩୦ ଅଧାଚନ୍ଦ୍ର ରତ୍ନ ଜଡ଼ିତ ଗୋ୩୵ ସୁନା ମା୧୯୦ ରତ୍ନ ଜଡ଼ିତ କର୍ଣ୍ଣାବତଂସ ଛ ଗୋ୬୵ ମା୨୫୦ ମା୦ କର୍ଣ୍ଣାଞ୍ଚଳ ଗୋ୬୵ ମାଢ଼ ୧୪୦୦ ଏ କର୍ଣ୍ଣାଞ୍ଚଳ ଖଞ୍ଜାକୁ ରତ୍ନ ଜଡ଼ିତ କାନଫୁଲ ଗୋ୨୨୵ ମା୧୯୦ ରତ୍ନ ଜଡ଼ିତ ମକର କୁଣ୍ଡଳ ଗୋ୪୵ ମା୨୬୦ ରତ୍ନ ଜଡ଼ିତ ତଢ଼ାଉ ଗୋ୨୵ ମା୬୦ ଏ କୁଣ୍ଡଳ ତଳେ ଖଞ୍ଜାକୁ ମୁକୁତା ମୋଡ଼ିଆ ଗୋ୪୵ ମା୪୦ ହୃଦୟ ଭୂଷଣ ଗୋ୩୵ ମା୧୧୦୦ ମୁକ୍ତା ଚାପସରି ଗୋ୩୵ ମା୨୪୦ ରତ୍ନ ଜଡ଼ିତ ସୁନା ବାଘନଖ ଲାଗି ହରିଠାମାଳ ଗୋ୩୵ ମା୧୧୦ ମୁକ୍ତା ହାର ମାଳ ଗୋ୧୵ ମା୪୦ ସୁନାକଣ୍ଠି ଦୋସରି ମାଳି ଗୋ୩୵ ମା୧୭୦ ରତ୍ନ ଜଡ଼ିତ ପଦକ ଗୋ୩୦୵ ଲମଣା ସିକୁଳି ସୁତା ମଧ କରି ମା୨୮୦୦ ତ୍ରିଖଣ୍ଡି ମା୦ ଓଡ଼ିଆଣି ଗୋ୩୵ ମା୪୭୦ ରତ୍ନ ଜଡ଼ିତ କଟିମେଖଳା ଗୋ୩୵ ମା୭୫୦ ରତ୍ନ ଜଡ଼ିତ ପଦ୍ମମାଳ ଗୋ୩୵ ମା୯୫୦ ରତ୍ନ ଜଡ଼ିତ ପଦକ ମାଳ ଗୋ୩୵। ୧୧୦୦ ରତ୍ନ ଜଡ଼ିତ କଟୀ ମେଖଳା ଗୋ୩୵ ମା୭୫୦ ରତ୍ନ ଜଡ଼ିତ ପଦ୍ମମାଳ ଗୋ୩୵ ମା୯୫୦ ହାଲକା ଚନ୍ଦ୍ରମାଳ ଗୋ୧୵ ମା୧୦୦୦ ପଦ୍ମଭୁଜ ଗୋ୪୵ ମା୭୦୦ ଶ୍ରୀଭୁଜ ଗୋ୪୵ ମା୨୦୦୦ ଏ ଭୁଜରେ ଖଞ୍ଜାକୁ ସରଳବଳା ପଟ ୪୵ ମା୮୦୦ ଗନ୍ଧର୍ବ ବଳା ପଟ ୪ ମା୮୦୦ ରତ୍ନ ଜଡ଼ିତ ବାହୁଟୀ ପଟ ୮୵ ମା୨୭୦୦ ଖୁଣ୍ଟି...**[31b]** ଗୋ୩୦୵ ସୁନା ମା୧୫୦

ଶ୍ରୀପୟର ଯୋ ୩୵ ମା୪୩୮୦ ପାହୁଡ଼ ପଟ୬୵ ମା୧୨୦୦ ପାବଳା ପଟ୨୵ ମା୧୦୦୦ ଗାଏ ତଢ଼ାଉ ମୃ୵ ଆୟୁଧ ମୃ ୮ ମା୨୧୦୦ ଶ୍ରୀଭୁଜତଳ ଖୁଣ୍ଟୀ ଗୋ୪୵ ମା୧୫୦୦ ଗାଏ ତଢ଼ାଉ ମୃ..୵ ସୁନା ମା୧୦୩୫୪୧୦ ଏ ତଢ଼ାଉମାନରେ ରତ୍ନମାନ ଲାଗିବାକୁ ... ... ନାନା ରତ୍ନ ବାହାରେ ସୁନା ମା୪୦୦୦୦ ଗାଏ ପଦ ୨୵ ତଢ଼ାଉ ଘଟଣ ଯୋଗେଂ ସୁନା ମା୭୫୪୧୦ଢ଼ ।

ତିନି ଧୂପ ଷୋଡ଼ଶ ଉପଚାର ପୂଜା ବିଧି ପାତ୍ରମାନଙ୍କୁଂ ଦେଲା ଆସନ ୧୯ ଅଷ୍ଟ ପାଖୁଡ଼ା ହୋଇଂ ସୁବର୍ଣ୍ଣ ପଦ୍ମପାତ୍ର ଗୋ୧୯ପଳ ୧୬ ଲେଖାଏ ଗୋ୩୯ ପ୍ଳ୪୮ । ସ୍ୱପାତ୍ର ଗୋ୧୯ ପଦ୍ମବଟି ଗୋ୩୯ ପ୍ଳ ୪୮ ପାଦ୍ୟ ୧୯ ...ଗୋ୩୯ ପ୍ଳ ୪୮ ଅର୍ଘ୍ୟପାତ୍ର ପାତ୍ରି ଗୋ ୩୯ ପ୍ଳ ୪୮ ଆଚ଼ମନ ପାତ୍ର ୧୯ ଢ଼ାଳ ଗଡ଼ୁ ଗୋ୩୯ ପ୍ଳ ୪୮ ମଧୁପର୍କ ପାତ୍ର ୧୯ ସୁନାରେ ମଧୁ ଥୋଇବା ନିଷେଧ ମାନି ମାଢ଼େ ଢ଼ାଙ୍କୁଣି ଲାଗି ରୁପା କୁଡୁକି ଗୋ୩୯ ରୁପା ପ୍ଳ୪୮ ଏ ପୁନରଆଚମନ ପାତ୍ର୧୯ ବଡ଼ ଢ଼ାଳ ମୁତା ଗୋ୩୯ ସୁନା ପ୍ଳ ୪୮ ସ୍ନାନପାତ୍ର ୧୯ ଜଳ ପ୍ଳ... ଲେଖାଏ ସମ୍ପାଇବାର ସାନ ଗରେଆ ଗୋ୩ ପ୍ଳ୪୮ ଏ ସ୍ନାନ କରାଇବାକୁ ରୁପାବେଣ୍ଟ କଂସା ଦର୍ପଣ ଗୋ୩୯ ଏ ରୁପାବେଣ୍ଟ ଗୋ୩୯ ରୁପା ପ୍ଳ ୩୦ ବସନ ଥୋଇବାକୁ ପାତ୍ର୧୯ ସୁନାବଟା ଗୋ୩୯ ପ୍ଳ୪୮ ଆଭରଣ ଥୋଇବାପାତ୍ର ୧୯ ସୁନାବଟା ଗୋ୩୯ ପ୍ଳ୧୮, ଏ ରତ୍ନ ଗଣ୍ଠିଲାଗି ପଦକ ଗୋ୩୯ ସୁନା ପ୍ଳ୩ ଚତୁଃସମ ଥୋଇବାକୁ **[32a]** ସୁନା ତାଟିଆ ଗୋ୩୯ ପ୍ଳ୪୮ ଫୁଲ ଥୋଇବା ପାତ୍ର ୧ ସୁନାବଟା ଗୋ୩୯ ପ୍ଳ୪୮ ଧୂପପାତ୍ର ୧୯ ଆଳତୀ ଗୋ୩୯ ପ୍ଳ୪୮ ଦୀପପାତ୍ର ୧ ସୁନା ଆଳତି ଗୋ୩ ପ୍ଳ୪୮ ଏ ପୂଜାଠାରେ ବସିବାକୁ ରୁପା ବଇଠା ଗୋ୩୯ ପ୍ଳ୯ ଏ ଦିପରୁଖା ଗୋ୩୯ ପ୍ଳ୩୦ ଗାଏ ପଦ ୨୯ ରୁପାଦିପ ଦିପରୁଖା ମଧ ମୃ ୪୯ ରୁପା ପ୍ଳ... ନଇବେଦ୍ୟ ପାତ୍ର ୧୯ ମୁଣୋହି ଭୋଗ ଠାରେ ବଢ଼ା ହୋଇଥିବ ଘୃତଯୁକ୍ତ ଶ୍ରୀଓରିଆ ଅନ୍ନ ପସି ପାତ୍ର ସୁନାଥାଳି ପଟ ୩୯ ପ୍ଳ୪୮ ସୁଦର୍ଶନଦେବଙ୍କ ମୁଣୋହି କି ଥାଳି ପଟ ୧୯ ପ୍ଳ୧୬ ଗାଏ ପଟ ୪ ପ୍ଳ୬୪ ବନ୍ଦାପନା ପାତ୍ର ୧୯ ସୁନା ସାତବତି ଗୋ୩୯ ପ୍ଳ୪୮ ପୂଜା ଶଙ୍ଖ ଗୋ୩୯ ଏ ରୁପାବଇଠି ଗୋ୩୯ ରୂପା ପ୍ଳ୬, ପୂଜା କଂସା ଘଣ୍ଟି ଗୋ୩୯ ଏ ଧରିବାକୁ ମୁଠି ଗୋ୩୯ ରୂପା ପ୍ଳ୧୮ ପୂଜାଠାରେ ପାଣି ଏଡ଼ାକୁ ସୁନା ପରିଖଖୋରା ଗୋ୩୯ ପ୍ଳ୬୦ ଗରେଆବଡୁ ପୂଜାବେଳେ ପାଣିଦେବାକୁ ସୁନାଗଡୁ ଗୋ୩ ପ୍ଳ ୬୦ ଗାଏ ପ...୯ ସୁନାରୁପା ମଧ ମୃ୭୩ଝ ଏ ସୁନାକମ ମୃ୫୫୯ ସୁନା ୮୫୯୯ ଏ ପୂଜା ବିଧି ନିମିତେ... ନିଅ ପଳସ୍ଳାସାଏ ଏ ପ୍ଳ୧୯ ମା୮ ଲେଖାଏ ସୁନା ମା୬୮୭୨ ରୁପା ମୃ୧୮୯ ପ୍ଳ୧୩୫୯ ପ୍ଳ୧୯ ମା୮ ଲେଖାଏ ରୁପା ମା୧୦୮୦୯ ଏ ରୁପା କିରଣକୁ ଦେଲା ଏ ମା ୫୯ ସୁନା ମା୧ ଲେ. ମା୨୧୬ ଗାଏ ପଦ ୨୯ ସୁନା ରୁପା କମ ମୃ୭୩୯ ସୁନା ଦିଲା ମାଢ଼ ୭୦୮୮

ଏ ପୂଜା ତିନି ଧୂପ ପୂଜାବେଳେ ରାଜଉପଚାରମାନ ହୋଇବାକୁ ... ଦିଲା **[32b]** ରତ୍ନ ଜଡ଼ିତ ସୁନାକୁଣ୍ଡା ସୁନାବେଣ୍ଟ ଲାଗି ବିରଛତି ଗୋ୧୯ ସୁନା ମା୨୦୦ ଶୁକଳ ମେଘଡ଼ାୟର ଛତି ଗୋ୩ କଳା କନାଟି ଛତା ଗୋ୧ ନେତଲିଲାର ଛତା ଗୋ୨ ଗାଏ ଛତା ଗୋ୬୯

ଏ ସୁନାକୁଣ୍ଡା ଗୋ୬୯ ମା୩୦୦ ରୁପାବେଣ୍ଟ ଗୋ୬୯ ରୂପା ମା୬୦୦ ଗାଏ ଛତ୍ର ଗୋ୭୯ ସୁନା ମା୫୦୦ ରୁପା ମା... ଗୋ... ଧ୍ୱଜ... ଗୋ୧୯ ଏ

ଧ୍ୱଜବେଣ୍ଟ ମଧ୍ୟକରି ରୁପା ମା୨୫୦ ଗରୁଡ଼ ଧ୍ୱଜ ଗୋ୧୵ ଏ ଗରୁଡ଼ ଗୋ୧୵ ସୁନା ୧୫୦ ଏ ରୁପାବେଣ୍ଟ ମା୫୦ ସିଘଂଧ୍ୱଜ ଗୋ୧୵ ଏ ସିଂଘ ଏ ଧରିବାବେଣ୍ଟ ମଧ ରୁପା ମା୨୦୦ ଗାଏ ଧ୍ୱଜ ଗୋ୩୵ ସୁନା ମା୧୫୦

ଏ ରୁପା ମା୪୦୦ ସୁନାବେଣ୍ଟିଆ ରୁପାବେଣ୍ଟିଆ ଚଅଁର ଗୋ୧୦ଢ଼ ଏ ସୁନାବେଣ୍ଟିଆ ଚଅଂର ଗୋ୩୵ ଏ ବେଣ୍ଟ ଗୋ୩୵ ସୁନା ମା୯୦ ରୁପାବେଣ୍ଟିଆ ଚଅଂର ଗୋ୭୵ ବେଣ୍ଟ ଗୋ୭୵ ଗୋ୧୵ ରୁପା ମା୩୦ ଲେଖାଏ ମା୨୧୦ ଗାଏ ଚଅଁର ବେଣ୍ଟ ଗୋ୧୦୵ ସୁନା ମା୯୦ ରୁପା ମା୨୧୦ ରତ୍ନ ଜଡ଼ିତ ସୁନାନଳି ଲାଗି ପାଟ ଆଲଟ ଗୋ୩୵ ସୁନା ମା୯୦, ସର୍ବାକ୍ଷିଂକ କଂସାଦର୍ପଣ ଗୋ୩୵ ଏ ବେଣ୍ଟ ଗୋ୩୵ ରୁପା ମା୩୦୦ ସୁନା ବିର କାହାଳି ଗୋ୧୵ ସୁନା ମା୭୫ ରୁପା ଧୂପ କାଠି ଗୋ୩୵ ରୁପା ମା୩୨୫ ସୁନା ରୁପା ...ବଡ଼ ଗୋ୧୦ଢ଼

ଏ ସୁନାବେତ ଗୋ୪୵ ମା୨୫୦ ରୁପାବେତ ଗୋ୬୵ ରୁପା ମା୪୫୦ । ଗାଏ ସୁନା ରୁପା ବେତ ଗୋ୧୦୵ ସୁନା ମା୨୫୦ ରୁପା ମା୪୫୦

ସୁନା କପୁର ଆଳତି ଗୋ୩୵ ମା୧୫୦ ସଂଝ ଧୂପରେ ସଂଝ କାଳି ବନ୍ଧାପନାକୁ ସୁଦର୍ଶନଦେବକୁଂ ମଧ୍ୟକରି... ସଂ**[33a]**ଝ କାଳିବଟା ପଟି ୪୵ ସୁନା ମା୪୦୦ ମୁଣୋହି ବଢ଼ିଲା ଉତାରେ ବିଡ଼ିଆ ଲାଗିକି ପାନ ହଡ଼ପ ଗୋ୩୵ ସୁନା ମା ୩୦୦ ପାନ ପରିଖ ଗୋ୩୵ ସୁନା ମା୪୫୦ ଗାଏ ମୃ୬୵ ସୁନା ମା ୭୫୦ ଗାଏ ପ..୵ ସୁନା ରୁପା ମୃ୪୩୵ ସୁନା ମା୨୪୫୫ ରୁପା ମା୨୨୮୫ ଦିଲା ଏ ମା୫୵ ସୁନା ମା୧ ଲେଖାଏ ମା୪୫୭ ଗାଏ ସୁନା ମା୨୯୧୨ ଗାଏ ପଦ୨୵

ଷୋଡ଼ଶ ଉପଚାର ରାଜୋପଚାର ପୂଜାବିଧି ସାମିଗ୍ରିକି ମୃ୧୧୬୵ ସୁନା ଦିଲା ମା୧୦୦୦୦ ଖଟଣି ଜୋଗାଡ଼ ଯୋଗେ ଶ୍ରୀଓରେଆ ମୁଣୋହିକି ସୁନା ପଇଲମ ପଟ ୪୵ ମା୮୦୦୦ ତୁଣମାନ ହାଣ୍ଡିମାନରେ ବଢ଼ା ହୋଇବା ନାଡ଼ି ସର ସତିଆ ଏଣ୍ଡୁରି ବଡ଼ ଡ଼ାଳିମ୍ବ ମରିଚ ଲଡ୍ଡୁ ମଧ କରି ପିଠାମାନ ବଢ଼ା ହୋଇବାକୁ ସୁନାଥାଳି ପଟ ୨୦୵ ଏ ପଟ ୧୵ ସୁନା ବି୧।୧୦୵ ଏ ପ୍ଳ୧୵ ମା୧୨୵ ମା୩୬୦ ଲେ. ମାଢ଼ ୧୭୨୦୦ ଗୋଟିକାତାଡ଼ ଗୋ୪୵ ମା୪୦୦ଲେ. ସୁନା ମା୧୬୦୦ ଖିରି ବାଢ଼ିବାକୁ ସୁନାକୁଣ୍ଡ ଗୋ୩୵ ଏ ଗୋ୧୵ ଗୋ୧ ବି ୩୵ ମା୭୨୦ ଲେ. ମା୨୧୬୦ ବାସଘିଅ ଥୋଇବାକୁ ସୁନା କୁଡୁକି ଗୋ୪୵ ମା୧୦୦ ଲେ. ମା୪୦୦ ଅଦାପାଚେଲି ପାଂଇ ..ରଡ଼ା ଲୁଣ ଥୋଇବାକୁ ସୁନାବଢ଼ା ଗୋ୧୨୵ ମା୫୦ ଲେ. ମା୬୦୦ ଶ୍ରୀହସ୍ତ ପାଣିରେ ବୁଡ଼ାଇବାକୁ କ୍ରପୁର ବାସପାଣି ଥୋଇବାକୁ ସୁନାକୁଣ୍ଡ ଗୋ୩୵ ମା୪୦୦ ଲେ. ମା୧୨୦୦ ସୁନାଗରେଆ ଗୋ୪୵ ଏ ଗୋ୧୵ ମା୪୮୦ ଲେ. ମା୧୯୨୦ ଚଟୁସମ ଲାଗିକି ସୁନା ଡ଼ାବର ଖୋରା ଗୋ୩୵ ମା୩୬୦ ଲେ. ମା୧୦୮୦ ଗନ୍ଧଥିବାକୁ ଗନ୍ଧ... **[33b]** ଗୋ୧୵ ସୁନା ମା୧୨୦ ଏ ଡ଼ଙ୍କି

ଗୋ୧୵ ମା୩୦ ଗାଏ ପଦ ୨୵ ମା୧୫୦ ସୁନା ଜିଭ ଚ୍ଛା ଗୋ୩୵ ମା୩୨ ଛାମୁ ଅଖଣ୍ଡ ଜଳିବାକୁ ସୁନାଦିପ ଗୋ୪୵ ମା୪୮୦ ଏ ଉପରେ ସରା ଗୋ୪୵ ସୁନା ମା୪୮୦ ଏ ସୁନା ଶିକଳା ଗୋ୪୵ ମା୪୪୦ ଗାଏ ମୂ୧୨୵ ସୁନା ମା୧୪୦୦ ରତ୍ନ ଜଡ଼ିତ ସୁନାଖଟ ଗୋ୩୵ ମା୨୫୦୦ ଖଟ ଦୋଳି ଗୋ୧୵ ସୁନା ମା... ... ଗୋ୧୵ ମା୭୦୦ ବିମାନ ଗୋ୧୵ ସୁନା ମା୫୦୦ ପୁଜାଖଟୁଲି ଗୋ୩ଟି ସୁନା ମା୩୦୦ ଗାଏ ମୂ୯୵ ମା୪୮୦୦ ତ୍ରିମୁଣ୍ଡି ଉପର ବିତପା ଚାନ୍ଦୁଆରେ ଖଞ୍ଜା ହୋଇବାକୁ ସୁନା ପଦ୍ମଫୁଲ ଗୋ୩୵ ମା୬୦୦ ଦେବସ୍ନାନ ଯାତ୍ରା ଚନ୍ଦନ ପାଣିକି ସୁନା ଗରେଆ ଗୋ୨୭୵ ଗୋ୧୵ ମା୨୪୦ ଲେ. ମା୬୪୮୦ ପୁଷ୍ପା ଅବିସେକ ଜାତ୍ରାକୁ ଶାସ୍ତ୍ର ବିଧି ପ୍ରମାଣେ କନକ ଦଣ୍ଡ ଛତ୍ର ଗୋ୧୵ ରତ୍ନ ବାହାରେ ସୁନା ମା୫୦୫ ସୁନା ଦିଉଡ଼ି ଗୋ୨୵ ଏ ନାଳୁଆ ମୂ୪୵ ମା୪୮୦ ଗାଏ ପ ..୵ ସୁନାକମ ମୂ୧୮୮୵ ସୁନା ମା୩୮୬୦ ।

ପୁଜାନିତିକି ଭିନେ ଥିବ ବିରଛତ୍ରି ଗୋ୧୵ ଏ କୁଣ୍ଡାକୁ ସୁନା ମା୧୫୦ ଧବଳଛତ୍ର ଗୋ୨୵ କୁଣ୍ଡାକୁ ସୁନା ମା୨୦୦ ଚଅଂର ଗୋ୨୵ଏ ସୁନା ବେଣ୍ଟ ଗୋ୨୵ସୁନା ମା୬୦ କଂସା ସର୍ବାଙ୍ଗ ଦର୍ପଣ ଗୋ୧୵ ଏ ବେଣ୍ଟକୁ ସୁନା ମା୧୫୦ ଉପଚାରକୁ ଛରାପଏରାକୁ ସୁନା ଖଡ଼ିକାମୁଠି ୧୵ ସୁନା ମା୮୦ ଚନ୍ଦନପାଣିକି ସୁନା କଗୋରା ଗୋ୧୵ ମା୧୨୦ ସୁନା କପୁର ଆଳତି ଗୋ୩୵ ମା୯୦ ଗାଏ ମୂ୧୨୵ ସୁନା ମା୧୦୦୦ ।

ଦେବତା ଘଟଣ ଯୋଗେ ଦୁଇ ପାରୁସରେ ଥିବାକୁ ସୁବର୍ଣ୍ଣ ଲକ୍ଷ୍ମୀ ପ୍ରତିମା ଗୋ୧୵ ସୁନା ମା୧୦୦୦ **[34a]** ସରସତୀ ପ୍ରତିମା ଗୋ୧୵ ସୁନା ମା୮୦୦ ପ୍ରତୀଅର ନାରାୟଣ ଦେ ମା୧୦୦୦ ରତ୍ନ ଜଡ଼ିତ ଗୋପିନାଥ ଦେବେ ମା୫୦୦ ପୁଷ୍ପ ଅଞ୍ଜଳି ବିଜେ ଅର୍ଦ୍ଧନାରାୟଣ ଦେବେ ମା୨୦୦ ଗୋବିନ୍ଦ ଦେବେ ମା୨୦୦ ରାମକୃଷ୍ଣ ଦୁଇଦେବତା ୨୵ ସରିଏ ସୁନା ମା୩୦୦ ଲକ୍ଷଣଦେବେ ସୁନା ମା୨୫୦ ସିତାଦେବି ସୁନା ମା୨୦୦ ହନୁମତଦେ ସୁନା ମା୧୦୦ । ଲକ୍ଷ୍ମୀନୃସିଂହ ଦେବତା ମା୪୦୦ ବାମନ ପ୍ରତିମା ଦେବତା ଗୋ୧୵ ସୁନା ମା୧୦୦ ଦୁର୍ଗାଦେବି ଗୋ୧୵ ସୁନା ମା୨୫୦ ଭୁବନେଶ୍ୱରି ପ୍ରତୀମା ଦେବତା ଗୋ୧୵ ମା୩୦୦ ଜେଷ୍ଟା ବେଢ଼ାକୁ ପଂଚମୁଖ ଚୁଳ ଗୋ୧୵ସୁନା ମା୫୦୦ ଗାଏ ଦେବତା ଗୋ୧୭୵ ସୁନା ମା୬୪୦୦

ଏ ଦେବତାମାନଙ୍କ ଅଲକାଂରକୁ ଦେଲା ମା୬୦୦ ଗାଏ ପଦ ୨୵ ସୁନା ମା୭୦୦୦ ମୁଦମୁଦି ଗୋ୬ଡ଼ ପରିକ୍ଷା ହାଥ ମୁଦ ମୁଦି ଗୋ୧୵ ସୁନା ମା୫ ମୁଦସ୍ତ ହାଥମୁଦି ଗୋ୧୵ ମା୪ ବେହୋରା ହାଥ ମୁଦି ଗୋ୧୵ ସୁନା ମା୪ ଗାଏ ସୁନାମୁଦି ଗୋ୩୵ ସୁନା ମା୧୩ ତିଳିକ୍ଷୋ ହାଥ ରୁପାମୁଦି ଗୋ୧୵ ରୁପା ମା୪ ରୋସୋସିଷ୍ଟ ହାଥମୁଦି ଗୋ୧୵ ରୁପା ମା୩ ମାହାସୁଆର ହାଥମୁଦ ମୁଦି ଗୋ୧୵ ରୁପା ମା୩

ଗାଏ ରୁପାମୁଦି ଗୋ୩୮ ରୁପା ମା୧୦୮ ଦିଲାସୁନା ମା୨ ଗାଏ ମୁଦମୁଦି ଗୋ୬୮ ଦେଲା ସୁନା ମା୧୫ ଚକରିଆ ଲେକାଂ ଜ୧୬୮ ସୁନାଚକ୍ର ଗୋ୨୮ ମା୧୦୦ ରୁପାଚକ୍ର ଗୋ୧୪୮ ଏ ଗୋ୧୮ ରୁପା ମା ୫୦ ଲେ ମା୭୦୦୮ ଦିଲା ଏ ରୁପା ମା୫୮ ସୁନା ମା୧ ଲେ. ମା୧୪୦ ଗାଏ ଲେକାଂ ଚକ୍ର ଗୋ୧୬୮ ଦେଲା ସୁନା ମା୨୪୦ ଗାଏ ...[34b] ମାଢ଼ ୨୪୮୦୦୦ଘ ପଦଠିକ କନକ ମୋଣ୍ଡୋଇ ଆବରଣ ଏ ସିଂହାସନ ବାଡ଼ ଖମ୍ବ ମଧେ ସା ୧୦୦୦୦୦ ଛାମୁ ରୁପାକପାଟ ରୁପା କିରଣ ମା୨୭୫୦୦ଘ ସୁନା ମା୪୫୦୦ ଶ୍ରୀଅଗଂ ଭିତର ସୁନା ମା୪୧୦୮ ସିଂହାସନେ ବିଜେ କରିବାର ସୁନାଚକା ସିକଳି ଅନ୍ଧଣାକାଞ୍ଚ ନରାଜ ମଧ ମୃ୧୨୫ଘ ସୁନା ମା୫୯୧୦ ଅଙ୍ଗାଭରଣ ତଢ଼ାଉ ... ସୁନା ମା... ...ସର୍ବାଭରଣ ତଢ଼ାଉ ଆୟୁଧ ମଧ କରି ମୃ୨୧୦ଘ, ସୁନାରନ୍ ମଧ କରି ମା୭୫୪୧୦ ଧୂପପୁଜା ଉପଚାର ବିଧି ଯୋଗେ ମୃ..୮ ସୁନା ମା୧୦୦୦୦ ଖଟଣି ଯୋଗାଡ଼ ଖଟପଲଙ୍କ ମଧ କରି ମୃ..୮ ସୁନା ମା୩୮୬୨୭ ରାଜନିତିକି ଛତ୍ର ଚାମର ଉପଚାର ସାମିଗ୍ରି ମଧ ମୃ୧୨୮ ସୁନା ମା୧୦୦୦ ମୁଦମୁଦି ଗୋ୬୮ ସୁନା ମା୧୫ ସୁନା.. ଚକ୍ର ଗୋ୧୬୮ ସୁନା ମା୨୪୦ ଦେବତା ଘଟଣ ଯୋଗେ ମୃ୧୭୮ ଏ ଅଳଂକାର ମଧେ ସୁନା ମା୭୦୦୦ ଗାଏ ପଦ ...୮ ସୁନା ମା୨୪୮୦୦୦ ଦେଉଳ ପ୍ରତିଷ୍ଠାକୁ ଭଣ୍ଡାରେ ଥିବା ସୁନା ମା୨୦୦୦ ଗାଏ ପଦ୨୮ ସୁନା ମା୨୫୦୦୦୦ ଗାଏ ଦେଉଳ ତୋଳାକୁ ମଧ କରି ଦିଲା ସୁନା ମା୧୨୫୦୦୦୦

ଏ ଉତ୍ତାରେ ଏ କ୍ଷେତ୍ରରେ ଡ଼ିହ ବାସ୍ତୁ ଯୋଗା ଦେଲା ପରମେଶ୍ୱରକଂ ଦେଉଳ ଆଏତନକୁ କ୍ଷେତ୍ରଦେବତାମାନଙ୍କଂ ଦେଉଳ ଆଏତନକୁ ସନ୍ୟାସିମାନକଂ ମଠକୁ ଉଭୟ ଖଣ୍ଡ ମୁଦ୍ରସ୍ତ ମଠକୁ ଅଠାର ବହ୍ନପୁର ଡ଼ିହ ବାସ୍ତୁକୁ ପରମେଶ୍ୱରକଂ ସେବକମାନଙ୍କଂ ଡ଼ିହ ବାସ୍ତୁକୁ ଜନକୁଳ ପରଜାମାନକଂ ରହୀବା ବାସ୍ତୁକୁ ମଧ କରି ନିଜାଗା ଆଟଂଣା ଆଏ ଦେଲା ପ୍ରଥମୁ ପରମେଶ୍ୱରକଂ ଆଏତନକୁ... ...[35a] ହାଥେ ୧୨ ଭୁମି ବାଟୀ ୪ ଏ କ୍ଷେତ୍ର ଆଧିପତି ମାର୍କଣ୍ଡେଶ୍ୱରଦେବକଂ ଦେଉଳ ଆଏତନ ଏ ଦେବକଂ ତୋଟା ଏ ପୁର୍ବେ ସପତ ମାତ୍ରି ଗୋସାଣି ଆଏତନ ମଧ କରି ଭୁମି ବାଟୀ ୧ଏ ଏ ମାର୍କଣ୍ଡେଶ୍ୱର ଚକ୍ରତୀର୍ଥ ଆଏତନ ଭୁମି ବା୩ ଗାଏ ପଦ ୨୮ ବା୪ଟି । ହରିହର ଯୁଗ୍ମ ଯମେଶ୍ୱର ଦେବକଂ ଦେଉଳ ଆଏତନ ତୋଟା ମଧ କରି ମା୧୦ କପୋଳମୋଚନେଶ୍ୱର ଦେବକଂ ଆଏତନ ତୋଟା ମଧ କରି ମା୫ ସ୍ୱେତମାଧବ ମଚ୍ଛମାଧବ ଦକ୍ଷିଣ ସମୟା ସ୍ୱେତଗଙ୍ଗା ତିର୍ଥ ଆଏତନ ମଧ କରି ବା୨ ଉଗ୍ରସେନ ମାଧବ ରକଣିମାଧବ ଆଏତନ ମା୨ ଦକ୍ଷିଣ କାଳିକା ଦେବି ଆଏତନ ମା୨ ଚାମଣ୍ଡାଦେବି ଆଏତନ ମା୨ ମରିଚାଇ ଦେବି ଆଏତନ ମା୨ ଅର୍ଦ୍ଧାଶନି ଦେବି ଆୟତନ ମା୨ ସର୍ବମଙ୍ଗଳାଇ ଦେବି ଆଏତନ ମା୫ ଶ୍ରୀଗୁଣ୍ଡିଚା ନବର ଆଏତନ ବା୨ ବାଲିନୃସିଂହନାଥ ଦେବକଂ ଆଏତନ ମା୫ ଇନ୍ଦ୍ରମାଧବଦେବକଂ ଆଏତନ ନିଳକଣ୍ଠେଶ୍ୱର ଦେବକଂ ଆଏତନ ଇନ୍ଦ୍ରଦ୍ୟୁମ୍ନତିର୍ଥ ଆଏତନ ମଧକରି ବା୨

ଆଲମଚଣ୍ଡି ଦେବି ଆଏତନ ମା୨ ସାହିମାନର ଦେବାଦେବିମାନ ଆଏତନ ମା୧୦ ଗାଏ ଦେବତା ଆଏତନ ଯୋଗେଂ ବା୧୭୨୭ ଅଠାର ବ୍ରହ୍ମପୁର ୧୮୦ ଡ଼ିହ ବାଡ଼ି ବାସ୍ତୁ ମାହାପୁରୁଷ ପାଣିଗ୍ରାହୀ ମଧ କରି ବା୧୩୬୨

ପରମେଶ୍ୱରକଂ **ଭୋଗ ନିଯୋଗର** ଭଲମନ୍ଦ ବୁଝିବେ ମୁଦ୍ରସ୍ତ ପଣ୍ଡା ପଶୁପାଳକ ମୁଖ୍ୟକରି ବ୍ରାହ୍ମଣ ସେବକମାନକୁଂ ସ୍ନାନ**[35b]**ସନ୍ଧ୍ୟା ପୁଜା ସିଖାଇବୋ କ୍ଷେତ୍ରର ସମସ୍ତ ଲୋକମାନକଂର ହାରିଗୁହାରି ବୁଝି ଦଣ୍ଡମଣ୍ଡ କରିବାକୁ ପରିକ୍ଷାକୁ କହିବେ, ଯାତ୍ରା ପର୍ବମାନ ସଂସଯ ପଡ଼ିଲେ ପରିଛା ନ କହିବେ। ଏ ନିମିତ୍ୟେ ଦେଉଳ ଚାରିଦିଗରେ ରୁହାଇଲେ ସନ୍ୟାସି ବାଆନ ମଠ ୫୨ଢ ଆନ୍ଧ୍ର ମଠ ୧୨, ମହାରାଷ୍ଟ୍ର ଆଠ ମଠ, ...ଆଠ ମଠ, କାର୍ଣାକୁବ୍ନ ପାଞ୍ଚ ମଠ ୫ ହିଗୁଂଳା ତିନି ମଠ ୩ ଓଡ଼ିଆ ୧୪ ମଠ ଚଉଦ ଗଉଡ଼ିଆ ପାଞ୍ଚ ମଠ ୫ ଗାଏ ସନ୍ୟାସି ବାଆନ ମଠ୫୨ଢ ଏକଦଣ୍ଡି ମଠ ୩୦ ମନୋଦଣ୍ଡି ମଠ ୧୫ ତ୍ରିଦଣ୍ଡି ମଠ ୭ ଗାଏ ମଠ ୫୨୦ ଏ ମଠ ଗୋ୧୦ ବାସ୍ତୁତୋଟା ମଧ କରି ମା୧ ଲେ. ବା୨।୧୨ ମୁଦ୍ରସ୍ତ...୨ଢ ପରମେଶ୍ୱରକଂ ବାଡ଼ରେ ଉତର ମୁଦ୍ରସ୍ତ ବିଷ୍ଣୁସ୍ୱାମି ମୁଦ୍ରସ୍ତ ମଠ ୧୦ ଏହା ମଠ ବାଲିପଡ଼ି ପୋତି ହୋଇଂଗଲାକୁ ଏହାକୁ ଦେଲା ମଉ ନାନା ଏ ବଖରା ୭୦ ଡ଼ିହ ବାସ୍ତୁ ତୋଟା ମଧ ହୋଇଂ ମା୧୦।

ଶ୍ରୀ ବଳରାମଦେବକଂ ବାଡ଼ରେ ଅଗ୍ନିଶର୍ମା ମୁଦ୍ରସ୍ତ ମଠ ୨୦ ବା୧ ଦେଉଳ ପ୍ରତିଷ୍ଠା କଲା ଆତ୍ରେୟ ଗୋତ୍ର ପୁରୁରଥ ଆଚାର୍ଯକୁଂ ଏହା ବନ୍ଧୁକୁଟୁମ୍ବ ଘେନି ଘର କରି ରହିବାକୁ ଦିଲା ଦକ୍ଷିଣ ପାରୁଷେ ରଥସାହି ବା ୪ ପରମେଶ୍ୱରକଂ ସେବକ ଡ଼ିହ ବାସ୍ତୁକୁ ଦେଲା ଦେଇତା ପଶୁପାଳକମାନକୁ ଦଇତା ଉଗ୍ରସନ ସବର ୪ ପୋଓ ୩ ଝିଅ କୁଟୁମ୍ବକୁ ଏକଠା କରି ରୁହାଇବା ନିମିତେଂ ଦେଉଳ ଉତର ଦ୍ୱା**[36a]**ର ଦିଗରେ ଦେଇତାପଡ଼ା କରି ବସାଇଲା ବାର ୧୨ ହାଥେ ବା୬ ପତିବଂସ ଲୋକକୁଂ ଏକଠାକରି ରୁହାଇବାକୁ ଦେଲା ଭିଖାରିପଡ଼ା ବାର ୧୨ ହାଥେ ବା୬୦ **ସୂର୍ଯବଂସେ ପୁରୁଷୋତ୍ତମ ଦେବ** ମହାରାଜା ଏ ଭିଖାରିପଡ଼ା ପଦ୍ମଜାଇ ତୋଟା କରି ପରମେଶ୍ୱରକୁଂ ଦେଲାକୁ ଏ ପ୍ରତିବଧେ ଏ ପତିମାନକୁଂ ଘରକରି ରହିବାକୁ ଦେଲା ବଡ଼ଦାଣ୍ଡେ ପଛିମ ସାହିରେ ବା୩ ପାଣିଛଡ଼ା ପଣ୍ଡାମାନ ଡିହବାସ୍ତୁକୁ ଦେଲା ଚୁଡ଼ଗଂପୁରି ସାହିରୁଂ ବା୩ ସିଘାଂରି ପଶୁପାଳକମାନକୁଂ ଆୟାମାହାଜନମାନକୁଂ ମଧକରି ଏମାନକଂ ଡ଼ିହ ବାସ୍ତୁକୁ ଦେଲା। ଦୋଳମୁଣ୍ଡୋଇ ସାହିରୁଂ ବାଲିସାହିରୁଂ ଯମେଶ୍ୱରପୁର ସାହିରୁଂ ମଧ୍ୟ କରି ବା୩ ସୁଆର ମାହାସୁଆରମାନକୁଂ ଦେଲା ଦେଉଳ ପୂର୍ବେ ମୁଦୁଲି ସାହି ବା୩ ଆଉ ସମସ୍ତ ସେବକମାନକୁଂ ଦେଲା ଯମେଶ୍ୱରପୁର ସାହି ବାଲିସାହି ଦୋଳମୋଣ୍ଡୋଇ ସାହି, କାଳିକାଦେବି ସାହି, ମାର୍କଣ୍ଡେଶ୍ୱର ସାହି କପିଳେଶ୍ୱର ସାହି, ମାଟୀ ମୋଣ୍ଡୋଅ ସାହି ଚୁଡ଼ଗଂପୁର ସାହିରୁଂ ମଧ କରି ଦେଲା ଡ଼ିହ ବାସ୍ତୁ ବା୨୦ ଯବନ ଉପଦ୍ରବ ନିବାରଣକୁ ମାଣିକି ପାଟଣା ଖାଲ କୋଠାପାଟଣା ଦୁଇ ମୁହାଣଠାରେ ଡ଼ଗାଂ ଘେନି ରହିଥିବ ଏ

ନିମନ୍ତେ ଏ କ୍ଷେତ୍ରରେ ରହିଥିବାକୁ ଦେଲା ଡ଼ିହବାସ୍ତୁ ମା୧୦ ଚଉକିଦଳଇ ଚାପ ଘେନି ଦୋବନ୍ଧା ନଇଠାରେ ରହିଂଥିବାକୁ ଏହାର ଏ କ୍ଷେତ୍ରରେ ଘରକରିଥିବାକୁ **[36b]** ଦିଲା ମା୧୦ ଗାଏ ପଦ ...୮ ବା୧୯୯।୫ ପରିକ୍ଷା ପରକରଣମାନ ଘର କରି ରହିବାକୁ ଦିଲା ବା୩ କ୍ଷେତ୍ରରେ ଜନକୁଳ ପରଜା ରହିବାକୁ କେଓଟ ଅଡ଼ଗଂ ମଧ କରି ବା୨୦ **ସୂର୍ଯବଂସେ କପିଳେଶ୍ୱର ଦେବ** ମାହାରାଜା ଏ ଏହାକଂର ଭୋଗ ଭିଆଣ କଲାକୁ ଇନ୍ଦ୍ର ଜାମ୍ବୁ ତିର୍ଥ ନିକଟେ ... ... ... କରି କୁମ୍ଭାରମାନକୁଂ ରୁହାଇଲା ବା୩ ଗାଏ ପଦ..୮ ବା୨୨୫।୫ ଅଠାର ବ୍ରହ୍ମପୁର ୧୮୮ ମାହାଜନ ମାହାପୁରୁଷ ପାଣିଗ୍ରାହି ତୋଟାକୁ ଜଳଛେତ୍ରକୁ ଦେସ ଆଠଗ୍ରାମ ୮ରୁ ଦେଲା ବା୧୩୮୨।୯ ଆଗ୍ୟାଂ ପ୍ରମାଣେ ନ ଦେବା ତିର୍ଥ ବାକ୍ୟ କରତା ମାହାଜନକୁ ଜ୨୦୮ ବାସ୍ତୁ ତୋଟା ଜଳ ... ମଧ ବା୨୧୮ ଏମାନେ ଦକ୍ଷିଣ ମହୋଦଧି ତିର୍ଥ, ମାର୍କଣ୍ଡେଶ୍ୱର ତୀର୍ଥ ସ୍ୱେତଗଗାଂ ତିର୍ଥ, ଇନ୍ଦ୍ରଦ୍ୟୁମ୍ନି ତିର୍ଥ, ଏ ତିର୍ଥମାନରେ ସ୍ୱଦେସି ପ୍ରଦେସି ଜାତିମାନକୁଂ ମାନ ଦାନ ବାକ୍ୟ କରାଇଂ ଦକ୍ଷିଣା ଘେନିବେ, କ୍ଷେତ୍ରରେ ବଡୁ ବେହା ନହଣା ଶ୍ରାଧ ସଂକଳପ କରାଇଂବେ, ଏଥିରୁ ଦାନ ଦକ୍ଷିଣା ଦେବେ, ଏ ନିମିତ୍ୟେ ଏହାକୁଂ ଡ଼ିହବାସ୍ତୁ ବାହାରେ କୋଠ କଲା ତେଟା ଜଳଛେତ୍ର ଭୁଇଂ ବା୧୯ ଜାଇଂ ନିକର ଦିଲା ଭୁଇଂ ବା୧୩।୬୩।୯ କୁମ୍ଭାରମାନକୁଂ ଘରକରି ରହିବାକୁ ଦେଲା ସମଗଂ ଗ୍ରାମରୁଂ ନିଜପଡ଼ା ବା୭ ଗାଏ ପଦ ୨୮ ଭୁଇଂ ବା୧୩୭୦ । ... ... **[37a]** ଗାଏ ପଦ ୨୮ କ୍ଷେତ୍ରରୁଂ ଆଠ ଦେସରୁଂ ମଧ କରି ଦେଲା ଭୁଇଂ ବା୧୫୯୫।୧୦ ଦେଇଂ ରୁହାଇଲା ।

## I.B.5.2 [ନିତ୍ୟପୂଜା ଓ ଭୋଗ]

ଏ ଉତାରେ **ପରମେଶ୍ୱରକଂ ନିତ୍ୟ କୃତ୍ୟ ପୁଜା ବିଧିକି** ଭିଆଇଲା । ଶ୍ରୀବଳରାମଦେବ ୧ ଶ୍ରୀଶୁଭଦ୍ରାଦେବି ଶ୍ରୀଜଗନ୍ନାଥଦେବ ୧ ଶ୍ରୀସୁଦରସନ ଦେବ ଗାଏ ଚତୁର୍ଦ୍ଧା ମୃତ୍ତି ୪୮ ଦିବସକୁ ଦିବସ ରାତ୍ର ପହରେ ଥାଉଁ ନିଦ୍ରାଭାଜି ଆଳସ୍ୟ ସ୍ୟାନ୍ତିକି ପ୍ରଥମ ଶଙ୍ଖ ସବଦ ୧ ମହୁରି ସବଦ ୧ ଗିତ ସବଦ୧ ବିଣା ସବଦ ୧ ଭାଟ କଏବାର ସବଦ ୧, ଗାଏ ପାଞ୍ଚ ସବଦ ୫ ରବା ସବଦ ୧ ତାଳ ସବଦ ୧ ଘଣ୍ଟ ସବଦ ୧ ନିଘା ସବଦ ୧ ଭେରୀ ସବଦ ୧ ମୃଦଙ୍ଗ ସବଦ ୧ କାମ ସବଦ ୧ ସବଦ୧ ଗାଏ ସବଦ ୧୭ ।

ଏ ଉତାରେ ଗମ୍ଭରା ଦ୍ୱାର କବାଟ ଫେଡ଼ାଇବାକୁ ପରିକ୍ଷା ପରକରଣେ ୧ ମୁଦରସ୍ତ ୧ ଶ୍ରୋତ୍ରିଅ ବ୍ରାହ୍ମଣ ୧ ପାଳିଆପଣ୍ଡା ୧ ସିଘାଂରି ପଶୁପାଳକ ୧ ଅଖଣ୍ଡ ମେଇକାପ ୧ କବାଟ ମୁଦଦେଖି ଭାଜିଂବାକୁ ମୁଦ୍ରା ୧ ସେଜଘର ମେଇକାପ ୧ ସୁଆର ବଡୁ ୧ ଚାଙ୍ଗଡ଼ା ମେଇକାପ ୧ ବାହାର ଗରେଆବଡୁ ୧ ଭିତର ଗରେଆବଡୁ ୧ ଶ୍ରୀମୁଖମାନ କର୍ପୁର ପାଣିରେ ପୋଛିବାକୁ ଶ୍ରୀମୁଖ ସିଘାଂରି ୧ ଭିତର ସୁନା ଦଉଡ଼ି ସେବକ ୧ ପତ୍ରି ବଡୁ ୧ ଭିତର ଭଣ୍ଡାର ମେଇକାପ ୧ ଫାରକ ମୁଦୁଲି ୧ ଜଉତିସ

ପାତ୍ର ୧ ବାରଗଣିଆ ୧ ଖଟଣି ସମସ୍ତ ସେବକମାନେ ୧ ଥାଇଂ ମୁଦଦରସୋଆ ଉତାରେ ମୁଦ ଭାଜିଂ କବାଟ ଫେଡ଼ିଲା ଉତାରେ ସମସ୍ତ ସେବକମାନେ **[37b]** ଗମ୍ଭରା ଭିତରେ ପସିଂ ସେଜଘର ମେଇକାପ ଖଟ ସେଜ ବିଜେ କରାଇଂ ସେଜ ଘରକୁ ନେଲା ଉତାରେ ସିଘାଂସନ ଉପରକୁ ହାଥରେ ସୁନା ବଇଠି ଗୋଟୀଏ ୧ ଘେନି ଭିତର ଭଣ୍ଡାର ମେଇକାପ ଶ୍ରୀଅଗଂମାନ ମଣିଲା ଉତାରେ ସିଘାଂରି ପଶୁପାଳକ ସିଘାଂସନ ... ... ଉଲାଗି ବଶ୍ର ଉଲାଗି ଖଦି ଗୋଟାଏ ଗୋଟାଏ ଲାଗି କରାଇଲା ଉତାରେ ଶ୍ରୀମୁଖ ସୀଘାଂରି ସୁନା କପୋରାରେ କପୁର ମିଶ୍ରିତ ପାଣିରେ ଝୋଲା ଲୁଗା ବୁଡ଼ାଇଂ ଶ୍ରୀମୁଖମାନ ପୋଛି ଶଙ୍ଖ କଳା ହିଗୁଂଳ ହରିତାଳ ଏ ବର୍ଣ୍ଣମାନ ଶ୍ରୀମୁଖମାନରେ ଲାଗି କରାଇଲା ଉତାରୁ ସିଂହାସନ ତଳେ ପାଳିଆ ପଣ୍ଡା ପିଢ଼ା ମାଡ଼ିବସିଂ କଂସା ସର୍ବାଙ୍ଗି ଦର୍ପଣ ଗୋ୩ ଛାମୁରେ ବସାଇ ଏ ଦର୍ପଣେ ପାଦ ପ୍ରକ୍ଷାଳଣ ଦାନ୍ତକାଠି ଲାଗି ଆଚଂମନ ଡ଼ୋଳାମାନରେ ତ୍ରିଫଳା ପାଣି ଲାଗି କରାଇ ଧୁପଦିପରେ ପୁଜାକରିଂ ପଞ୍ଚାମୃତ ସ୍ନାନକୁ ଗୁଆଦୁଧ ୧ ଦଧି ୧ ଘୃତ ୧ ମହୁ ୧ ଖଣ୍ଡ ୧ ଏହା ପ୍ରତ୍ୟେ ପ୍ରତ୍ୟେକେ ବେଦମନ୍ତ୍ରେ ସ୍ନାନ କରାଇଂ, ଏ ଉତାରେ ସୁଗନ୍ଧ ମିଶ୍ରିତ ବଟା ତିଳ ଅଏଂଳା ଲାଗି କରାଇଂ । ଏ ରୁପରେ ଉଷ୍ଣ ଜଳ୧, ତିର୍ଥଜଳ ୧ ମନ୍ତ୍ରଜଳ ୧ ବଶ୍ର କ୍ଷାଳିତ ସୁବାସଜଳ ୧ ଏ ଜଳମାନ ସଂସ୍କାର କରି ସ୍ନାନକରାଇ ଶୁକଳ ଧୌତ ବଶ୍ରେ ଶ୍ରୀଅଗଂ ପୋଛାହୋଇବ ଏ... **[38a]** ... ।

ମୁଖପଖାଳ ପୁଜାପଣ୍ଡାମାନକଂର ସେବା ଏ ପୁଜା କେଉଣଥା ଦିନରୁଂ ପଣ୍ଡାମାନେ ଖଟୀ ନ ପାରିଲାକୁ ସିଘାଂରି ପଶୁପାଳକମାନେ ଏ ମୋହୋପାଳ ପୁଜା କରନ୍ତି । ଏଥକୁ ଦ୍ରବ୍ୟଭିଆଣ କାଳି ଲାଗିକି କୁମ୍ଭାଟୁଆ ଦାନ୍ତ କାଠି ଖଣ୍ଡ ୩ ପୋଡ଼ା ଗୁଆଗୁଣ୍ଡିକି ଗୁଆ ଗୋ୩ ଖଡ଼ିକା ଲାଗିକି ... ସୁନା ଜିଭ ଚଞ୍ଚା ପାତିଆ ଗୋ୩ ତ୍ରିଫଳା ପାଣିବଢ଼ା ୩୯ ହରିଦ୍ରା ବାହାଡ଼ା ଜିଅଂଳା ପ୍ଳ୩ ପଞ୍ଚାମୃତକୁ ଗୁଆଦୁଧକୁ ୩ ଚାଂ ବସାଦହି ପୋଟୋଇ ଗୋ୩ ଘିଅ ତିନି ମାଣିକା ୩ ମହୁ ୩ ମା୩ ଖଣ୍ଡ ପ୍ଳ୩ କାଙ୍କୋଳାଚୀର ଗନ୍ଧି ଗନ୍ଧମିସି ବଟା ଅଏଳା ଗୋ୩୯ ପ୍ଳ୩ ଶ୍ରୀଅଗଂରୁଂ ଏମାନ ଛାଡ଼ିବାକୁ ସରସା ... ଉଆ ପିଠୁଆଉକୁ ଚାଳ ମା୩ ନଡ଼ିଆ ଗୋ୩ ପାଣିକି ବଡ଼ ନଉତି ଗୋ୧ ତିର୍ଥଜଳ ଆଣିମାକୁ କୁଡୁଆ ଗୋ୧ ଉଷ୍ଣ ଜଳକୁ କୁଡୁଆ ଗୋ୧ କାଠ ଖ୨ଣ୍ଡ ସୁବାସ ଜଳକୁ କୁଡୁଆ ଗୋ୧ ଚତୁସମ ଲାଗିକି ସରସା ଚନ୍ଦନ ପ୍ଳ ୩ ଏ ମିଶ୍ରିତକୁ ଅଗୁରୁ ମାଢ଼ ୩ କପୁର ତି୧ କସ୍ତୁରି ଚି... ଗନ୍ଧ ଚି୨ ନୈବେଦ୍ୟ ଅମୃତବାନି କଦଳି ଗୋ୨୦ ।

ଏ ମୁଣୋହିକି ପାଚଲା ଅମୃତବାନି କଦଳି ଗୋ୩୦ ଏ ମୁଣୋହିଠାକୁ କଦଳିପତ୍ର ଖ୩ ଏ ମୋହୋପାଳ ପୁଜା ବଢ଼ିଲା ଉତାରେ ସଘାଂରୀ ପଶୁପାଳକମାନେ ସିଘାଂସନ ଉପରେ ଉଠି ଶ୍ରୀଅଗଂ ଚତୁସମ ଉଲାଗି କରି ଚତୁସମ ଲାଗି ତଡ଼ପ ... ପାଛୋଡ଼ି ... ଲା**[38b]**ଗି ହୋଇ ଏ ଉପରେ ଚୁଳଲାଗି ତଢ଼ାଉ ଲାଗି ମାଳ ଲାଗି କରିଲା ଉତାରେ ସୁଆର ବଡୁ ଗମ୍ଭରା ଧୋପଖାଳ କରି ପାଆଡ଼ ଲୁଗାଘେନି

ପୋଛାସାରି ଧୋବ ଲୁଗା ପାଆଡ ପାଡ଼ି ସିତଳ ସିଘାଂର ଭୋଗ ଗୋ୧ଟିକୁ କପୁର ମରିଚ ମିସି ଖଣ୍ଡ ମଣ୍ଡା ଖଣ୍ଡ ସାକର ଖଣ୍ଡ ପନସ ... ସିଘାଂର ଲିଆ କପୁରଖଣ୍ଡ ମିଶ୍ରିତ ଭଜାଚୁଡ଼ା ବାଣପଇଡ଼ ମୁଣୋହି ଭୋଗ୍ୟ ଜଉଁ ଋତୁରେ ଜଉଁ ଫଳ ଏହାକୁ ମା... ବଢ଼ାହୋଇ ପଚଂଉପଚାର ପୁଜାରେ ପାଳିଆ ପଣ୍ଡା ଆଦ୍ୟ ସମ୍ବୋଧନୀ ପୁଜା କରିବ ।

ଏ ଉତାରେ ବାହାରେ ଦ୍ୱାରପାଳ ପୁଜାସାରି, ସକାଳ ଧୁପ ପୁଜା ୧୬ ଗମ୍ଭରା ଧୋପଖାଳ ହୋଇଂ ପାଆଡ଼ ପଡ଼ି ସୁବର୍ଣ୍ଣପାତ୍ରମାନରେ ଭୋଗ ମଡ଼ଫୁଲି ବଢ଼ାହୋଇଂ ସୋଡ଼ସ ଉପଚାର ପୁଜା ବିଧିରେ ପଣ୍ଡା ସିଂଘାଂସନ ଉପରେ ପିଢ଼ା ମାଡ଼ିବସିଂ ଉତ୍ତରାଭିମୁଖ ହୋଇ ପୁଜାକରି ବସିବ । ମନ୍ତ୍ରରାଜ... ପରମେଶ୍ୱରକଂ ଆଡ଼ରେ ପୁଜା କରିବ । ଦ୍ୱାଦଶାକ୍ଷର ମନ୍ତ୍ରେ ଶ୍ରୀବଳରାମ ଦେବଙ୍କୁଂ ପୁଜା କରିବ । ଭୁବନେଶ୍ୱରି ମନ୍ତ୍ରେ ଶୁଭଦ୍ରାଦେବିକିଂ ପୁଜା କରିବ । ସୁଦରସନ ମନ୍ତ୍ରେ ସୁଦରସନଦେବଙ୍କୁଂ ପଣ୍ଡା ସିଘାଂସନ ତଳେ ବସିଂ ପୁଜା କରିବ ।

**ଏ ସୋଡ଼ସଉପଚାର ପୁଜା ହୋଇବାକୁ ଦ୍ରବ୍ୟ ଭିଆଣ ୧୬**

ଆସନଂ ସ୍ୱାଗତଂ ପାଦ୍ୟ**[39a]**ମର୍ଘ୍ୟମାଚମନୀୟକଂ ।
ମଧୁପର୍କାଚମନସ୍ନାନଂ ବସନାଭରଣାନି ଚ ।।
ସୁଗନ୍ଧ ସୁମନୋ ଧୂପ ଦୀପ ନୈବେଦ୍ୟ ବନ୍ଦନାତ୍ ।

ଏଥକୁ ଏ ସାମିଗ୍ରି ପତ୍ରିବଡୁ ମୁଳେ ଭିଆଣ ଭଣ୍ଡାରୁଂ ସୁବର୍ଣ୍ଣପାତ୍ରମାନ ବାହାରେ ପୁଜାଉପକରଣ ପଦାର୍ଥମାନ ମଧ କରି ଖଟୀବ । ... ଆସନ ୧, ସୁବର୍ଣ୍ଣ ପଦ୍ମପାତ୍ର ଗୋ୩, ଏଥକୁ ତୁଳସିଫୁଲ ଗୁଡ଼ାଏ ୧୬, ସ୍ୱାଗତ ୧, ପାତ୍ର ସୁବର୍ଣ୍ଣ ପଦ୍ମ ଗୋ୧୨, ତୁଳସି ମିଶ୍ରିତ ଫୁଲ୧, ପାଦ୍ୟ୧୬, ସୁବର୍ଣ୍ଣତାଟିଆ ଗୋ୩, ଜଳ ପଦ୍ମ ଫୁଲ ମାଢ଼ ୩, ବିଷ୍ଣୁକ୍ରାନ୍ତାଫୁଲ ମା୩, ସୁଆଂଧାନଫୁଲ ମା୩ଢ଼, ଦୁର୍ବାଙ୍କୁର ମାଢ଼ ୩, ସ୍ୱେତ ସୋରିଷ, ଦେବ ଉଶୀର କୁଙ୍କୁମ, ଗାଏ ପଦାର୍ଥ ୪୮, ଅର୍ଘ୍ୟ ୧୬ ସୁବର୍ଣ୍ଣ ଢ଼ାଳ କୁଡୁକିମୁତା ଗୋ୩ ଟୀରେ ଜଳ ୧ ଗୋକର୍ଣ୍ଣ ପ୍ରମାଣେ କୁଶ ୧ ବାସ ଚନ୍ଦନ ୧ ତୁଳସି ଫୁଲ ୧ ଉଆଚାଉଳ ୧ ଜବଧାନ ମାଘିତିଳ ୧ ସ୍ୱେତ ସୋରିସ ୧ ଦୁବ ଗାଏ ପଦାର୍ଥ ୯ ଏଥକୁ ଫଳ ନି... ନଡ଼ିଆ ଗୋ୩ ଗାଏ ପଦାର୍ଥ ... .. ମନ ୧ ସୁବର୍ଣ୍ଣଢ଼ାଳ ମୁତା ଗୋ୩ରେ ବସ୍ତ୍ର କ୍ଷାଳିତ ଜଳରେ ଲବଙ୍ଗ ୧ ଜାଇଫଳ ୧ ଉସିବେଣା ୧ ଚନ୍ଦନ ୧ ମୁରାମାସ ୧ କସ୍ତୁରୀ ୧ କର୍ପୁର ୧ ଗାଏ ପଦାର୍ଥ ୭ ମିସି ଜଳ । ମଧୁପର୍କକୁ ୧୬ ମହୁ ..ପ ସୁନାଢ଼ାଳ ମୁତା ଗୋ୩ଟୀରେ ଲବଙ୍ଗ ୧ ଜାଇଫଳ ... **[39b]**... ଉଶ୍ରୀବେଣା ୧ ଅଗୁର ୧ କର୍ପୁର ୧ ଗାଏ ପଦାର୍ଥ ୭ ମିସି ଜଳ ୧ ସ୍ନାନ ୧୬ ସୁବର୍ଣ୍ଣ ଢ଼ାଳ ଗୋ୩ଟୀରେ ବସ୍ତ୍ର କ୍ଷାଳିତ କପୁର ମିଶ୍ରିତ ଜଳ ପ୍ଳ୧୦୦ ଲେ. ପ୍ଳ ୩୦୦ ପୁରାଇଂ ଏଥି ଗଙ୍ଗା ଯମୁନା ଗୋଦାବରି ସରସ୍ୱତି ନର୍ମଦା ସିନ୍ଧୁ କାବେରି ଗାଏ ସାତ ତିର୍ଥ ମନ୍ତ୍ରରେ ... ଆବାହନ

କରି ସୁନା ବଇଠି କଂସାଦର୍ପଣ ଗୋଟାଏ ଛାମୁରେ ବସାଇଂ ଏ ଦର୍ପଣେ ସ୍ନାନ କରାଇବ ଧୋବ ବଣ୍ଡେ କରି ଦର୍ପଣରେ ଶ୍ରୀଅଙ୍ଗ ପୋଛିବ । ବସନ ୧୯ ସୁବର୍ଣ୍ଣ ବଟା ଗୋଟାଏରେ ଚାଙ୍ଗଡ଼ାରୁଂ ନୁଆ ନିତି ଅନା ଧୁପକେ ସଂସ୍କାର କରି ଲାଗି କରାଇବ । ଆଭରଣ ୧ ସୁନାବଟା ଗୋଟାଏରେ ରନ୍ ଗଣ୍ଡି ସୁନା ନେଆଳ ଗୋଟା ଥୋଇଂ ସଂସ୍କାର କରି ଲାଗି କରାଇବ । ଗନ୍ଧ ୧୯ ସୁବାସ ଚନ୍ଦନ ୧ ଅଗୁରୁ ୧ ଗନ୍ଧ୧ କୁଙ୍କୁମ୧ ମାଲି ୧ କପୁର ୧ କସ୍ତୁରି ୧ ସେବତି ଫୁଲ କାକରର ପନିର ଜଳ ୧ ଗାଏ ପଦାର୍ଥ ୮ ମିଶ୍ରିତ କରି ପ୍ଳ ... ... ।

ସୁବର୍ଣ୍ଣ ତାଟିଆ ଗୋଟାଏରେ ଥୋଇଂ ସଂସ୍କାର କରି ଲାଗି କରାଇବ । ପୁଷ୍ପ ୧୯ ସୁବର୍ଣ୍ଣବଟା ଗୋଟାଏରେ ଜଉଂ ରତୁରେ ଜଉଂ ସୁବାସ ଫୁଲ ହୋଇଥିବ ଏଥିରି ମାଳ **[40a]** ଗୋଟାଏ ଥୋଇଂ ସଂସ୍କାର କରି ଲାଗିକରାଇବ । ଧୁପ ୧୯ ଦସାଗଂ ଗୁଗୁଳ ୧୯ ଗୁଗୁଳ ୧ ଉଶ୍ରୀବେଣା ୧ ସୁବାସ ଚନ୍ଦନ ୧ ଅଗର ୧ ବେଲକାଠ ୧ କୁରୁବେଲି ୧ ମୁଥା ୧ ମହୁ ୧ ଖଣ୍ଡ ୧ ଗୁଆ ୧ ଘୃତ ୧ ଗାଏ ପଦାର୍ଥ ୧୦ ଏକତ୍ର ଚୂର୍ଣ୍ଣକରି ସୁବର୍ଣ୍ଣ ଧୁପାବଳି ଗୋଟାଏରେ ଅଗ୍ନି ସଂଯୋଗ କରିଂ ମନ୍ତ୍ରରେ କରିଂ ସଂସ୍କାର କରି ଘଣ୍ଟାବାଦ୍ୟ ବଜାଇଂ ଆଳତି ଦେବ । ଦିପ ୧ ସୁନା ଦିପାବଳି ଗୋ ଟାଏରେ ନୁଆ ଧୋବଲୁଗା ବଳିତା ଗୁଆଘୃତ ସଂଯୋଗ କରିଂ ଅଗ୍ନି ଲଗାଇଂ ମନ୍ତ୍ରେ କରିଂ ସଂସ୍କାର କରି ଘଣ୍ଟ ବାଦ୍ୟ ବଜାଇଂ ଦୀପ ଆଳତୀ ଦେବ ।

ଏ ପୁଜାକୁ କୋଠ ତୋଟା ମାଳି ତୁଳସି ଫୁଲ ଖଟିବ । ଏ ଉପଚାରମାନ ସଂଗତେ ରାଜ ଉପଚାରମାନ କରିବ । ଏ ଉତାରେ ଛାମୁଟେରା ପାଡ଼ିଂ ମୁଣୋହି ହୋଇବ । ଏ ଟେରା ବାହାରେ କଳାପାଆଛଠାରେ ପୁରାଣପଣ୍ଡା ପୁରାଣ ଶ୍ରବଣ କରାଇବ ।

ଏ ମୁଣୋହି ପଦାର୍ଥମାନ ଛଡ଼ରସରେ ହୋଇବ, ତିକ୍ତ ପଦାର୍ଥେ ୧ କଟୁ ପଦାର୍ଥେ ୧ କଷାୟ ପଦାର୍ଥେ ୧ ମଧୁର ପଦାର୍ଥେ ୧ ଆମ୍ଳିକ ପଦାର୍ଥେ ୧ ଲବଣ ପଦାର୍ଥେ ୧ ଗାଏ ଛଡ଼ରସ ପଦାର୍ଥ ୬ଘ । ବିଷ୍ଣୁରେ ଅଦେୟ ତିକ୍ତ ପଦାର୍ଥେ ୧ ଜାଇଂ ନିକର ପାଚଂ ପଦାର୍ଥ ୫ ପାକବିଧି ଚାରି ପ୍ରକାର ୪ଘ ଭିମପାକ ୧ ନଳପାକ ୧ ସଉରି ପାକ ୧ ଗଉରିପାକ ୧ ଗାଏ ପାକବିଧି ପ୍ରକାର ୪୯ ଅନ୍ନ ଚତୁର୍ବିଧ ପ୍ରକାର୪ ସାଳିଅନ୍ନ, ଦଧି ଅନ୍ନ ୧, କ୍ଷିର ଅନ୍ନ ୧, ସିତଳ ଅନ୍ନ, ଗାଏ ଅନ୍ନବିଧି ପ୍ରକାର ୪୯ ଭିଆଣ ***ସାଳି ଅନ୍ନ***୧୯ ସୁବାସିତ ଶ୍ରୀଓରିଆ ଚାଳ ୧ ଏ ପାକ ଉତାରେ ଏଥି ମିସିବ ସଂମ୍ଭଘା ଗୁଆଘୃତ ୧ ଏ ମୁଣୋହି ସଗଂତକୁ ବଡ଼ାହୋଇଂଥିବ ଫାଳି ଟଭା ଖରଡ଼ା ଲବଣ୧ ଏତେ ପ୍ରକାରେ ସାଳି ତଣ୍ଡୁଳ ତିପତ ଅନ୍ନେ ୧ ଏ ମୁଣୋହି ବେଳକୁ ଗଉରି ପାକର ... **[40b]** ଭିମପାକର ବଡ଼ି ତିଉଣ ୧ ସଉରିପାକର ଦୁଧ ମହୁର ୧ ଆଳୁଭଜା

ସିଙ୍ଘ ବରଂହପୁର ବା... ଗାଏ ବରହପୁର ୪ ରହଣି ଭୂମି ବା୬୦।୪ ***ବାଲିଖଣ୍ଡ*** ବିସେ ଝାଡ଼କଟା ବରହପୁର ବିଲର ଭଇରୋପୁର ଗ୍ରାମ ବା୬୩।୪ କଣ୍ଡାପଡ଼ା ପୁରୁଷୋତ୍ତମପୁର ବା୨ ଜାମୁନା ପୁରୁଷୋତ୍ତମପୁର ବା୮ ବାଲିଆ ପୁରୁଷୋତ୍ତମପୁର ବା୨। ଗୋଡ଼ପଡ଼ା ଗୋପିନାଥପୁର ବା୪।୧୬ କେସୟାକେସରିପୁର ବା୨।୧୬ ବାହୁପଡ଼ା ଜଗନାଥପୁର ବା୮ ଧାନସରପୁରୁ ବା୪ ବରଂହପୁରୁ ବା୪ । ବେଗୁନିଆ ପୁରୁଷୋତ୍ତମପୁରୁ ବା୨ କୁଅରପୁରୁ ବା୫।୪ । ଗୋପଦା ଜଗନାଥପୁରୁ ବା୧।୧୨ ପଲାସପୁର ବା୨।୮ ଚଡ଼ିହର ପୁରୁଷୋତମପୁରୁ ବା୪।୧୦ । କରତିରା ପୁରୁଷୋତମପୁରୁ ବା୧ ଝାଡ଼ପଡ଼ା ପୁରୁଷୋତମପୁରୁ ବା... **[67b]** ଗାଏ ବରହପୁରୁ ୧୬ ବା୧୭।୧୬ । ***ଭା..ନେ..ଆ*** ବିସେ ଝାଡ଼କଟା ବରହପୁର ହରିହରପୁରୁ ବା୨୦ । ଭ..ରେ ଜଗନ୍ନାଥପୁରୁ ବା୪ ଭୁବନପୁରୁ ବା୧।୧୨ । ଜୟନ୍ତି ବରଂହପୁରୁ ବା୧୦ ଗାଏ ବ୍ରହ୍ମପୁର ୪୯ ବା୩୫।୧୨ । ***ସରିଗୋଡ଼ା*** ବିସେ ଜାଇଜଗନାଥପୁର ବା୮ ପଲାସପୁରୁ ବା୨ । ଗୁରୋଣ୍ଡୋ ପୁରୁଷୋତମପୁରୁ ବା୧ । ଗାଏ ବରହପୁର ୩୯ ରହଣିଭୂମି ବା୧୧ ***ଆକୋଟା*** ବିସେ ଝାଡ଼କଟା ବରହପୁର ଗୋ୪ ରହଣିଭୂମି ବା୧୭।୧୮ । ***ସେଣାଗିଡି*** ବିସେ ଝାଡ଼କଟା ବରହପୁରର ତିରାଗଣ ଲକ୍ଷ୍ମିନାରାୟଣପୁରୁ ବା୪ ମହିକା ଗୋବିନ୍ଦପୁରୁ ବା୮ । ଗାଏ ବରହପୁର ଗୋ୩ ରହଣି ଭୂମି ବା୧୦ । ଗାଏ ଭଦେରେଖ ଦଣ୍ଡପାଟେ ବରହପୁର ଗୋ୩୬ ଭୂମି ବା୨୬୨।୧୦

**ସୋରୋ** ଦଣ୍ଡପାଟେ ***ବାଂଆଟାସ*** ବିସେ ଝାଡ଼କଟା ବରହପୁର ରଲଟାପଟା ବରହପୁର ବା୮ । ଶ୍ରୀରାମପୁର ବା୧୬ । ରତନପୁର ବା୨ । ଜଗରାପଡ଼ା ଜଗନାଥପୁର ବା୨।୧୬ । ବଡ଼ପୋଖୋରି ଜଗନାଥପୁରୁ ବା୨।୮ପାର୍ବତୀପୁରୁ ବା୨ । ଲକ୍ଷ୍ମିପୁରୁ ବା୪ । ହରିହରପୁର ବା୧।୧୨ ଉକ୍ଷାସ ପୁରୁଷୋତମପୁର ବା୨ । ଈସାଣ ଗୋପିନାଥପୁରୁ ବା୨। ବାସୁଦେବପୁର ବା୩।୪ । ଗାଏ ବରହପୁର ୧୧୯ ବା୩୦।୧୪ ।

***ବିସାଲିଖଣ୍ଡ*** ବିସେ ଝାଡ଼କଟା ବରହପୁରର ଜଗଦଳ ଖୁଣ୍ଟିଆ ମହାପୁର ବା୪୦ । ରଣଭାଜପୁର ବା୧୬ । ବିଳାସ **[68a]** ବସନ୍ତପୁରୁ ବା୧।୧୮। ସରସ୍ୱତିପୁରୁ ବା୧।୧୨ । ଶ୍ରୀରାମପୁର ବା୩।୪ ଶ୍ରୀବସ୍ତପୁର ବା୧।୧୨। ବନଦାର ପୁରୁଷୋତମପୁର ବା୪। ସାନଜଗନାଥପୁରୁ ମା୧୬ । ସାଳମାଡ଼ି ସୋରନପୁର ବା୫୦।୧୨ଗୋପାଜିଆ ଜଗନାଥପୁର ବା୧ । ବିଷ୍ଣୁ ପୁରୁଷୋତମପୁର ବା୧ । ଗଙ୍ଗାଧରପୁର ମା୮ ବାଗଂଡ଼ିହ ଗୋପାଳପୁରୁ ବା୨।୮ । ମାଳଲକ୍ଷ୍ମୀନ୍ନସିଙ୍ଘଂପୁର ବା୧।୧୨ । ଚାନ୍ଦରତନପୁରୁ ବା୨।୮ । ରାଏପୁର ବା୫।୧୨ । ନୁସିଆ ବରଂହପୁର ବା୨।୮। ଗାଏ ବରଂହପୁର ଗୋ୨୩୯ ଭୂମି ବା୮୬।୧୫ । ଏ ଝାଡ଼କଟା ବରହପୁରର ।

***ଆଲୁମଳା*** ବିସେ ଆରୁଆକୋପାଳପୁର ବା୩୦ । ଗରେଆ ଗୋପିନାଥପୁର ବା୩।୪ । ଗୋବିନ୍ଦପୁର ବା୧।୧୨।ଗୋପାଳପୁର ଗ୍ରାମ ବା୫।୧୨ । ବିଷ୍ଣୁପୁର

ବା୨୮।୧୬ । ନରହରିପୁର ବା୩୨ । ଗପାଡ଼ୋଗଂ ଶ୍ରୀପୁରୁଷୋତ୍ତମପୁର ବା୧୬ । ମାହାନଳା ପୁରୁଷୋତମପୁର ବା୧ । ଏରଡ଼ଗଂ ସିବିପୁର ବା୩।୪ ସନ୍ତେଶ୍ୱରପୁରୁ ବା୪ । କେସରପୁର ବା୪। ଲ..କନା ପୁରୁଷୋତମପୁର ବା୩।୪ । ଭିମିପୁରୁ ବା୧୬ । ମାଛକଣି ଶ୍ରୀବଛପୁରୁ ବା୧ ଗାଏ ବରହପୁର ଗୋ୧୫୯ ବା୧୫୦।୧୨ । ଏ ଝାଡ଼କଟା ବରହପୁରକୁ ଲାଗିଅଛି ।

*ମୋନସାରା* ବିସେ ଅରଂକାଳିକାପୁର ବା୧୬ । କେସୋପୁର ବା୩।୪। ସର୍ବେଶ୍ୱରପୁର ବା୩।୪ । ବାସୁପଣ୍ଡା ସାସନ ଗୋପିନାଥପୁରୁ ବା୧ ଲକ୍ଷ୍ମିନାରାୟଣପୁରୁ ବା୨... ... **[68b]** ଜଗନ୍ନାଥପୁର ବା୪୯ ସାଧନ ବା୨ କେଳୁପୁସା ପୁରୁଷୋତମପୁରୁ ବା୪ । ଦ୍ୱାଦସପୁରୁ ବା୮୩୬ । ପାଖୁଡ଼ା ବାଳଗୋପାଳପୁରୁ ବା୧୬ । ସିଉଧାରପୁରୁ ନାରାୟଣପୁରୁ ବା୮ । ହରିପଣ୍ଡା ବାସୁଦେବପୁର ବା୪୯ ସାଧନ ବା୨ । ଶ୍ରୀରାମପୁର ବା୪୯ ରାଉଳପୁର ବା୪ ଦାମୋଦରପୁର ବା୧୬ । ଜଗନାଥପୁର ବା୧୬ । ଗାଏ ବରହପୁର ଗୋ୧୮୯ ବା୧୨୫।୧୮ । ଏ ଝାଡ଼କଟା ବରହପୁର ତୁଳସି ଅଛି ।

*ମୁଳୁଗାଇ* ବିସେଅରୁ ରତନପୁର ବା୨୬।୪ ପୁରୁଷୋତମପୁର ବରହପୁରୁ ବା୮ । ସାନ ଶ୍ରୀବସପୁରୁ ବା୨ ବନ ଶ୍ରୀବସପୁର ବା୪ ଗାଏ ବରହପୁର ଗୋ୪୯ ବା୪୦।୪ ଏ ଝାଡ଼କଟା ବରହପୁରକୁ ଲାଗିଅଛି ।

*ମାଣଦା* ବିସେଅର ବନ ବାସୁଦେବପୁର ବା୧୨ । ଖୁଦରଖୋସଳି ବିଷ୍ଣୁପୁର ବା୮ । ଦେବପୁର ବା୪ । ଗାଏ ବଂରହ ଗୋ୩୯ ବା୨୪ । ଏ ଝାଡ଼କଟା ବଂରହପୁରକୁ ଲାଗିଅଛି ।

*ବୟାଳିସି* ବିସେଅରୁ କାଣ୍ଡବିଂଧାଂ ଗୋବିନ୍ଦପୁର ବା୩।୪ । କୁଡ଼ି ବିସେରୁ ଲାଗିଅଛି ହାଟ ଗଣେଶ୍ୱରପୁର ବା୧୦ । ସାଳ ଶ୍ରୀବଛପୁରୁ ବା୩।୭ । ଆଚାର୍ଯ୍ୟ ଗୋପିନାଥପୁର ବା୪ । ଗଗାଂଧରପୁର ବା୪।ଉଘାଂଉଲୁ । ପୁରୁଷୋତମପୁରୁ ବା୩।୪ । ରାମଦେ ବାସୁଦେବପୁର ବା୧।୧୨ । ବଇଦିପୁର ବା୨। ନିରିଖି ଜଗନାଥପୁର ବା୪ । ବଡ଼ ଶ୍ରୀବଛପୁର ବା୫।୧୨। ସାଧନ ବା୩ ଅଲାଳପୁରୁ ବା୪। ଗୋପାଳପୁର ମା୧୬ ଗାଏ **[69a]**...ପୁର ବା୩।୪ । ଭଣ୍ଡିବସିଆ ହରିପୁର ବା୩।୪ ଗୋବିନ୍ଦପୁର ବା୩।୪। କାଗେଶ୍ୱରପୁର ବା୪ ମୁଣ୍ଡମରା ପୁରୁଷୋତମପୁରୁ ବା୩।୪। ଗୋପାଳପୁର ବା୫ । ସାରଙ୍ଗପୁରୁ ବା୧୨ । ସିଘାଂଜୋଡ଼ି ଦିଘାଂଜୋଡ଼ିପୁର ୬... ଦୋଳପୁରୁ ଉଦେପୁରୁ ବା୪ କରଡ଼ିଆ ବନ୍ଧ ଜଗନାଥପୁର ବା୩।୪ । କୋସହେତା ପାର୍ବତିପୁର ବା୨ କାଳିଦାମଜୀଳି ବରହପୁରୁ ବା୨ । ସୋମପୁର ବା୨ । ମାଗୁରି ଜଗନାଥପୁର ବା୨।୮। ଗାଏ ବରହପୁର ୧ ରହଣି ଭୂମି ବା୧୧୧।୮ ।

*ବେଣାହାର* ବିସେ ଝାଡ଼କଟା ବରହପୁରରୁ ସରଧାପୁର ବା୪ କପାସିଆ ଗୋବିନ୍ଦପୁରୁ ବା୨।୪ । ନଇପଡ଼ା ପୁରୁଷୋତମପୁର ବା୧।୧୨। ସୁଲୁବଧଂ

ଗୋପିନାଥପୁରୁ ବା୧ ସୋମନାଥପର ମା୧୬ ଆଦିତି ବରହପୁରୁ ବା୪ ଇଟିହା ପୁରୁଷୋତମପୁରୁ ବା୨।୮ । ବେଦପୁର ବା ୪ ଗାଏ ବରହପୁର ୯୮ ରହଣିଭୁମି ବା୨ ।

***ସରଘର*** ବିସେ । ଆଚାରିଆ ଶ୍ରୀରାମପୁରୁ ବା୩।୪ । ବନବାସେହାପୁରୁ ବା... ମୁକ୍ତିଦା ବରଂହପୁର ବା୮... ବାଳଗୋବିନ୍ଦପୁରୁ ବା...୧୬ ଝାଡ଼ଗୋଛି ବାସୁଦେବପୁରୁ ବା୧।୫ । କାଳୋପଡ଼ା ଗଣେଶ୍ୱରପୁର ବା୮ ରାଏକପୁର ବରଂହପୁର ବା୧୨ ଗୋପିନାଥପୁର ବା୨।୮। ଶ୍ରୀରାମପୁର ବା୧୨ । ଲକ୍ଷ୍ମୀନୃସିଂହପୁର ମା୧୬ । ନାରାୟଣପୁର ବା୨।୮ । ନରସିଂଘପୁର ମା୧୬ । ରଡ଼ଙ୍ଗିଆ ବରଂହପୁର ବା୧୫ । ବନ ଗି... ... **[69b]** ବା୨୦ । ଗାଏ ବରଂହପୁର ୧୬ । ରହଣିଭୁମି ବା୧୦।୫। ଗାଏ ସରୋ ଦଣ୍ଡପାଟେ ଗ୍ରାମେ ୧ ବରଂହପୁର ୫୨୮ ଭୁମି ବା୨୮୧।୭ ।

**ରେମୁଣା** ଦଣ୍ଡପାଟେ ଝାଡ଼କଟା ବରଂହପୁର *ଦେସସୁନେରି* ବିସେ ଗଣେଶ୍ୱରପୁର ବା୮୦ । ଶ୍ରୀକୃଷ୍ଣପୁର ବା୩୨ ସୋଆଇବନ ପୁରୁଷୋତମପୁର ... ବା୬୮ । ଅଚୁତିପର ବା୧୬ ବାସୁଦା ସୁବନପୁର ବା୧୬ । କାବୋପାଳ ପୁରୁଷୋତମପୁର ବା... ସର୍ବେଶ୍ୱରପୁର ବା୧୦ । କାଳିକାଦରିବରପୁର ବା୮ । ନେଉଳି ନରସିଂଘପୁର ବା୪।୧୬ ସୋମଲପୁର ବା୧୯।୪ ବଟେଶ୍ୱର ବାଣସରପୁର ବା୮ । ସୋମୋଲକ୍ଷ୍ମି ନାରାୟଣପୁର ବା୫।୧୨ । ଦାମୋଦରପୁର ବା୬।୧୮ ସରସ୍ୱତିପୁର ବା୮ । ଆଚାରଣ ନୋଆଗୋପାଳପୁର ବା୮ । ଆରୁଆ ସାରୁପୁର ବା୮ । ପ୍ରତାପପୁର ମା୧୬ । ଆମଲଟାଆ ସିଧେଶ୍ୱରପୁର ବା୩।୪ ଚନ୍ଦ୍ରାଗଡ଼ ପୁରୁଷୋତମପୁରୁ ବା୧ । ନିମାଇଁ ଖୁଣ୍ଡିଆ ହରିହରପୁର ବା୧।୧୨ । ଗଛପଦା ହରିହରପୁର ବା୧।୧୨। ବାଇଣ୍ଡୋ ଲକ୍ଷ୍ମୀନୃସିଂଘପୁର ବା୫।୧୨ । ଫୁଲବିଙ୍କେ ନୃସିଘଂପୁର ମା୧୬ । ଈସାଣପୁର ବା୧।୧୨ ଗାଏ ବରହପୁର ଗୋ୨୬୮ ଭୁମି ବା୩୧୪।୪। ଏ ଝାଡ଼କଟା ବରହପୁରର କୁଳିପାଳି ଅଛି ।

***ମୁଣାଖଣ୍ଡ*** ବିସେଅରୁ ହରିଡ଼ା ଜଗନାଥପୁର ବା୪ । କେରକେରା ପୁରୁଷୋତମପୁର ବା୧। ଭାବପୁର ବରଂହପୁର ମା୧୬ । ... **[70a]** ବରଂହପୁର ୧୧୮ ଭୁମି ବା୩୯।୧୧ ।

***ଆଙ୍କୋସୋଦା*** ବିସେର ଲାଗିଅଛି ବିଦ୍ୟାଧରତେଟୋର ବିଷ୍ଣୁପୁର ବା୧୬।୪ । ବସନ୍ତପୁର ବା୫୯ ସାଧନ ବା୩ ସକରପୁରୁ ବା୨ ଗାଏ ବରଂହପୁରୁ ୩ ବା୨୧।୮ । ଏ ଝାଡ଼କଟାକୁ ଲାଗିଅଛି

***ତଳମଙ୍ଗଳ*** ବିସେରୁ ସିଅଡ଼ା ସାସନର ବରଂହପୁର୧୯ ବା୩।୪ । ସାଗିରି... ପୁରଣ୍ଡପୁରୁ ବା୧।୧୨ । ଝାଡ଼କଟା ଦେସକୁ ଲାଗିଅଛି ବାଆଦେପୁର ବା୮ ଗାଏ ବରହପୁର ୩୮ ବା୧୨।୧୬ ।

***ରାଇକମା*** ବିସେଅର ଲାଗିଅଛି ଲକ୍ଷ୍ମିପୁରୁ ଆଦଡ଼ ପଦ୍ମପୁରୁ ବା୬୦ ହାଥ୍ ଅବଦାନ ଲକ୍ଷ୍ମୀନୃସିଘଂପୁରୁ ବା୭୦।୮ । କେନ୍ଦୁଆସାସନ ପଦ୍ମପୁର ବା୧୨ । ଜଳଜଳିଆ ହରିସଙ୍କରପୁରୁ ବା୩୦।୩।୨୦ କେସବପୁର ମା୧୬ ଉଆଉ ଜୋଡ଼ ବରହପୁରୁ ବା୮ । ନିଚିନ୍ତିପୁର ବା୨୦। ବିଜେନୃସିଂଘପୁରୁ ବା୨୪।୧୬ ସିଉପୁର ବା୪ । ପଣସିଆ ଗୋପିନାଥପୁର ବା୧୯।୧୨ କିଶାଘଟିଆ ବିଶ୍ୱେଶ୍ୱରପୁର ବା୨୦ କୁମ୍ଭାରଥୋଲବ ତ୍ରିଲୋଚନପୁର ବା୮ । ହରିହରପୁର ବା୫।୧୨ । ଇସାଣପୁର ବା୪ ଲକ୍ଷ୍ମୀସୋବନପୁର ବା୬।୮ । ବ..ଦାସପୁର ବା୨। ହେମପୁର ବା୮। ସାନ ତ୍ରିଲୋଚନପୁର ଗ୍ରାମ ବା୪ ହରପାଣଖୁଣ୍ଟା ହରିହରପୁର ବା୧ । ଶ୍ରୀକୃଷ୍ଣପୁର ବା୩।୪ । ସିମୁଳିଆ ପୁରୁଷୋତମପୁର ବା୪ । ଚନ୍ଦ୍ରପୁର ... ... ବା୪ ବିଜେପୁର ବା୧ ପରିଡ଼ା ମାହାଦାନର ମଧକରି ମୁଳିଆ ମା**[70b]**ହାଦାନପୁର ବା୧ ବିଶ୍ୱନାଥପୁର ଗ୍ରାମ ବା୪୦ ଗାଏ ବରହପୁର ୨୭୯ ଭୁମି ବା୪୨୨।୧୯।୨୦ ।

***ସାରଢ଼ା*** ବିସେଅରୁ ଲାଗିଅଛି ବଧପୁର ବା୨୧।୧୨ । ରାଉଳପୁର ବା୨୮୯ ପଡ଼ିଆ ନିମତେ ସାଧନ ବା୮ ଗାଏ ବରହପୁର ୨୯ ଭୁମି ବା୨୯।୧୨

***ତାଳଗାଂ*** ବିସେଅରୁ ଲାଗିଅଛି ମାହାସୁଖ ମାହାଦେବପୁର ବା୨।୮ । ରାଘୋପୁର ବା୧୬ ରଗଂଗୁଆ ପୁରୁଷୋତମପୁର ବା୪ କେରକେରା ବ୍ରହ୍ମପୁର ବା୧ ଗାଏ ବରଂହପୁର ୪୯ ଭୁମି ବା୨୩।୮ । ***ରାଏଣ୍ଡା*** ବିସେଅରୁ ଲାଗିଅଛି ସର୍ବସୁଗୁଣ ବଡ଼ନରସିଘ ଗ୍ରାମରୁଂ ସଣ୍ଡପୁର ବା୪ ସହଦେବପୁର ବା୪ ବଡ଼ଦୁର୍ଗାପୁର ବା୫।୧୨ ଦିଶିଖୁଣ୍ଟ ବଙ୍ଗହାରପୁର ବା୮ ପୁରୁଷୋତମପୁର ବା୨।୮ । ଜଳଶ୍ୱରପୁର ବା୨।୮ । ଗୋପାଳପୁର ମା୧୬ ଗୋବିନ୍ଦପର ବା୪ ସାନ ନରସିଘଂପୁର ବା୧୨ । ମାର୍କଣ୍ଡପୁର ବା୮ । ସାନ ଗଣେଶ୍ୱରପୁର ବା...।୧୫ । ବାଘ ବରେଆ ଜଗନ୍ନାଥପୁର ବା୪ ମଗଂଳପୁର ବା୨ ଚନ୍ଦ୍ରପୁରୁ ବା୨।୮ । ଜଏପୁରୁ ବା୧ ଅମରଦାସ ଖୁଣ୍ଟା ଶ୍ରୀରାମପୁର ବା୧।୧ । ହରିହରପୁର ବା୮ । କଇଳାସପୁରୁ ବା୫ ବଡ଼ ଗଣେଶ୍ୱରପୁର ବା୪।୧୬ ବଡ଼ଭିଆ ପୁରୁଷୋତମପୁର ବା୨।୮ ଗାଏ ବରହପୁର ୨୨ ଭୁମି ବା୧୪୨।୧୦ ।

***ସାନଟିଆ*** ଚଉରରୁ ଲାଗିଅଛି ଝାଂଝିଆ ପୁରୁଷୋତମପୁର ବା୩।୪ ମରୁଖୁଣ୍ଟା ଜଗନାଥପୁର ବା୧ ପାଚେଳିଆ ପୁରୁ**[71a]**ସୋତ୍ତମପୁର ବା୪ ଗାଏ ବରଂହପୁର ୪୯ ଭୁମି ବା୧୨।୪। ନରଣ୍ଟାରେ ଲାଗି ଲାଜାଭବଳପୁରୁ ବା୧୬ ବିନୋଡ଼ା ପୁରୁଷୋତମପୁର ବା୬।୮ । ଗାଏ ବରହପୁର ୨ ଭୁମି ବା୨୦।୮ । ନଗରଚଉରୀ ଲଗାଇଲାହିତରମା ଗଙ୍ଗାଧରପୁର ବା୨।୮ ***କଣ୍ଟାସାଳି*** ଚଉରୁ ଲା ବିଲା ନରଣି ବରହପୁର ବା ୨୯ ... ... ଆରୁଆପାଳ ବାସୁଦେବପୁର ବା ୨୨ ଶ୍ରୀରାମପୁର ବା୨୮ କଖଡ଼ାପାଳ ବାସୁଦେବପୁର ବା୪ କରେଆପଡ଼ା ପୁରୁଷୋତ୍ତମପୁର ବା୮ ବ୍ରହ୍ମପୁର ବା୪

ଗାଏ ବ୍ରହ୍ମପୁର ୭ ଭୂମି ବା୯୦ ମୁରୁକୁତା ଚଉରୁ ଲାଗି ଲାଡିହାଣ୍ଡରା ବାସୁଦେବପୁର ବା୨।୮ ଶ୍ରୀରାମପୁର ବା୮ । ***ଲାଉକେରା*** ଚଉରୁଂ ଲାଗିଲା ଲକ୍ଷ୍ମିନୃସିଂଘପୁର ବା୪ ***ପାନୁଆ*** ଚଉରୁ ଲାଗିଲା ନିଳକଣ୍ଠପୁର ବା୨।୮। ବାଲିପଡ଼ା ବାସୁଦେବପୁର ବା୩।୪ । ଗାଏ ବ୍ରହ୍ମପୁର ୨୬ ଭୂମି ବା୫।୧୨ । ଗାଏ ରେମୁଣା ଦଣ୍ଡପାଟେ ଅରୁଝାଡ଼ କାଡିର ଯାଏ କଟେକ କିଂସରହି ରାଇଜ ଫେରିଆସି ବାରଣାସି କଟକେ ବିଜେ ଜଉ ପରମେଶ୍ୱରଙ୍କୁଂ ଦେଲାର ବିସେ ..୬ ଅରୁ ଦେସଗ୍ରାମ..ରୁ ବରଂହପୁର ଗ୍ରାମ ୧୮୦୬ ଭୂମି ବା୧୪୪୭।୭।୨୦ । ଅଳାବସାଣ ଖରଡ଼ା ଲୁଣ ସୋସର କରିଆ ଅଢ଼ାରମାଣ ୧୦୫୦ ପଦ୍ମକଇଳି ତୋଟାର ବିଳାସ କଦଳି ଗୋ୧୫୦୦ ।

ଏ ମହାରାଜାଙ୍କ **ପାଟ ମହାଦେବୀ ନିଳା[71b]ଦେବି ମାହାଦେବିକଂର** ଦତ **ଚଉବିସକୁଦ** ଦଣ୍ଡପାଟେ ସିତଳ ଭୋଗ ଭିଆଣକୁ ବିଜେପୁରୁ ଗ୍ରାମୁ ବା୩୦ ଘଣପଣ ଗ୍ରାମୁ ବା୧୦ କୁଞ୍ଜର ଦଳଣ ଗ୍ରାମୁ ବା୧୫।୧୬ ଲୋଆତୋଟା ଗୋ୧ ଗାଏ ପ୪୬ ଦେସଗ୍ରାମ ୩୬ ଭୂମି ବା୫୫।୧୬ । ଥାବର ଗଛ ଲାଗି ତୋଟା ଗୋ୧୬ ଗାଏ ପଦ ୬ ଏ ଦଣ୍ଡପାଟରୁଂ ଦେସଗ୍ରାମ ୪୬ ବିଂଧା ୩ ବ୍ରହ୍ମପୁର ୨୬୯ ତୋଟା ୨ ଅଣାବସାଣାକୁ ମଧକରି ଭୂମି ବା୨୯୨୫।୨।୨୦ । ଖରଡ଼ାଲୁଣ। ମାଣ ୧୦୫୦ ବିଳାସକଦଳି ଗୋ୧୫୦୦ ।

**ବୁଡ଼ିଅଲାଗୁଂଡ଼ା ନରସିଂଘଦେବ ମାହାରାଜାକଂର ଦତ ଦଖିଣଦିଗ** ଦଣ୍ଡପାଟେ ***ରାହାଙ୍ଗ*** ବିସେ ଖୁଣ୍ଟିଗ୍ରାମ ବା୧୪୬।୧୫ । ଡ଼ାହିଲୋ ଗ୍ରାମ ବା୫୪।୫ କାଣ୍ଡଗୋଦା ଗ୍ରାମରୁଂ ହରିମତା ସକଂରିଆକେରା ବା୩୯।୫ ସାଖଣ୍ଡ ଗ୍ରାମରୁଂ ବା୧୩।୧୦ । ରୋସୋ ସେବେକମାନଙ୍କୁ ଅନ୍ତିକିରା ଗ୍ରାମ ବା୫୦।୧୪ ଏ ଦତ୍ତର ରେବତି ରମଣ ନାମେ ତୋଟା କଲାକୁ ଏ ଅଳସା ଗ୍ରାମରୁଂ ଭାଗ ୧୬ ବା୭୯।୧୮ । ରୋସୋ ସେବକମାନକଂୁ ବଂପାଳ ଗ୍ରାମ ବା୪୬।୫ । ଗଣାରଣ୍ଡାର ଗ୍ରାମରୁଂ ବା୩୭ ଗାଏ ଦେସଗ୍ରାମ ୫ ବିଂଧା ୧ ଭାଗ ୧୬ ବା୪୪।୧୭ ***କଫିଝୋଥାଇ*** ବିସେଅରୁ କାଳିଆପଦା ଗ୍ରାମ ବା୨୧।୧୪ । ପ୍ରଥମ ଡ଼ଙ୍ଗୋରା ଗ୍ରାମ ୧ ଦୁତିଅ ଡ଼ାଙ୍ଗୋରା ଗାଏ ଗ୍ରାମରୁଂ ବା୫୦।୬। ହରିହରପୁର ଗ୍ରାମ ୧ ବଳପଡ଼ା ଗ୍ରାମ ଗାଏ ଗ୍ରାମ ୨୬ ବା୫୦।୪ । **[72a]** ଗାଏ ଦେସଗ୍ରାମ ୫୬ ଭୂମି ବା୧୨୮।୪ । ***ସାଇଲୋ*** ବିସେଅରୁ ବାରବିଲୋ ଗ୍ରାମ ବା୧୫।୪। ଅଳାରୁ ରୋସୋ ଚକରିଆ ଅଡ଼ାରେ ଖରଡ଼ାଲୁଣ ମା୭୩୦ ଗାଏ ତିନି ବିସେଅରୁ ରାଜଦତ ଦେସଗ୍ରାମ ୧୩ ବଂଧା ୧ ରେଗେ ୧ ଅଳାବସାଣ ପ୧୬ ମଧ କରି ଭୂମି ବା୫୬୯।୧୧। ଖରଡ଼ା ଲୁଣ ମାଣ ୭୩୦ ।

**ଦୁତିଅ କବି ନୃସିଂଘଦେବ ରାଜାକଂର ଦତ । ଦଖିଣଦିଗ** ଦଣ୍ଡପାଟେ ***ରାହାଙ୍ଗ*** ବିସେ ଜିରାକଳି ଗ୍ରାମ ବା୩୧।୮। ଚମାରକେରା ଗ୍ରାମ ବା୧୬।୮। ଗାଏ

ଦେସଗ୍ରାମ ୨୦ ବା୪୭।୧୬ । ***ପୁବୋହୁଆଇ*** ବିସେ ଆରୁଚେରି ଗ୍ରାମ ୧୦ ବା୩୫।୧୫ ତରଡ଼ାପଡ଼ା ବା୧୫।୧୦। ଗୋଇତିରା ବା୯। ନିଳଓଡ଼ା ଗ୍ରାମ ବା୯।୧। ଗାଏ ଦେସଗ୍ରାମ ୪ ଭୂମି ବା୬୯।୬ ***ପଛିଷୋଆଇ*** ବିସେ ଓଡ଼ଖଣ୍ଡି ଗ୍ରାମ ବା୧୬।୧୦। ଗାଏ ୩ ବିସେଅରେ ଦେସଗ୍ରାମ ୭୦ ବା୧୭୩।୧୨। **ଚଉବିସକୁଦ** ଦଣ୍ଡପାଟେ ସୁଜନପୁର ଗ୍ରାମ ବା୧୩୦।୧୬ । ତୀତୀପ ଅଳାରେ ବସାଣ ଖରଡ଼ାଲୁଣ ରୋସୋ ଚକରିଆ ଅଢ଼ାରେ ମା୯୧ । **କୋଦିଣ୍ଡା** ଦଣ୍ଡପାଟେ ସଂଗ୍ରାମକେରା ଗ୍ରାମ ବିରିବାଡ଼ ବା୩।୧୦ । **ସରପଡ଼ା** ଦଣ୍ଡପାଟେ ଏନାକଂର ଦେଢ଼ ହିରାଦେଇ ଅମାଜିଆକଂ ଭାଗକୁ ରଣସିଆରପୁର ବା୩୩ । ଗଭାହି ଗ୍ରାମ ବା୩୦ ଗାଏ ଗ୍ରାମ ୨୦ ବା୫୨ ଗାଏ ତିନି ଦଣ୍ଡପାଟେ **[72b]** ଗତ ଦେସଗ୍ରାମ ୧୦ ବି ୧ ରିଦାଡ଼ ୧୦ ଭୂମି ବା୩୫୭।୧୨। ଖରଡ଼ାଲୁଣ ମା୯୧ ।

**ଚତୁଥକବୀ ନୃସିଂଘଦେବ ରଜାକଂର ଦତ ଦଖିଣଦିଗ** ଦଣ୍ଡପାଟେ ***ରାହାଙ୍ଗ*** ବିସେଅରୁ ବଂପାଳ ଗ୍ରାମ ବା୫୬।୫। ପାଣିଭଣ୍ଡାର ଗ୍ରାମୁ ବା୩୭ ଗାଏ ଦେସଗ୍ରାମ ୨ ବା୮୩।୫। ***ଓଳଧାର*** ବିସେଅରୁଂ ଥର ଗ୍ରାମୁ ବା୧୨।୧୦। ***ପୁବୁଡ଼ୋଆଇ*** ବିସେ ମାଟିହଣା ଗ୍ରାମ ବା୨୫।୮। ***ପଛିଷୋଆଇ*** ବିସେ ବେଲାଳଜଙ୍ଗ ଗ୍ରାମ ବା୧୫।୧୨। ***ଅଠାଇସି*** ବିସେ ଆରୋ ଗ୍ରାମ ବା୧୬।୧୩ । ଧନତିରି ଗ୍ରାମ ବା ୨୧।୧୦ । ଗାଏ ଦେସଗ୍ରାମ ୨୦ ଭୂମି ବା୩୮।୩ ***ଡ଼ମାରଖଣ୍ଡ*** ବିସେ ତିହୁଣା ଗ୍ରାମ ବା୪୮ ଗାଏ ଏମ୍ଭ ଦଣ୍ଡପାଟେ ବିସେ୬ଅରୁ ଦେସଗ୍ରାମ ୮୦ ବା୨୬୧।୧। ଏ ଦଣ୍ଡପାଟେ ଅସ୍ତଙ୍ଗ ଅଳାରୁ ରୋସଚକରିଆ ଅଢ଼ାରେ ଖରଡ଼ା ଲୁଣ ମା୭୩୦ । **ଆଠଗଡ଼** ଦଣ୍ଡପାଟେ ***ଅଛରାଟ*** ବିସେ କଟାବନ୍ଧ ଗ୍ରାମ ବା୧୦ । **କୋଠଦେସ** ଦଣ୍ଡପାଟେ ଏହାକଂ ବିରଜାଦେଇ ଅମାଜିଆକଂ ଭାଗକୁ ଦତ ***ଓରୋମଳୋ*** ବିସେ ଆରେ ବିରାତି ଜଙ୍ଗ ଗ୍ରାମ ବା୬୧।୧। **ସିରାଇ** ଦଣ୍ଡପାଟେ ***ସିରାଇ*** ବିସେ ଚଡ଼କପୁର ଗ୍ରାମ ବା୨୦ ଗାଏ ଚାରି ଦଣ୍ଡପାଟେ ୪ରେ ଦେସଗ୍ରାମ ୧୧ ଅଳାବସାଣ ୧ ଭୂମି ବା୩୧୪ ଖରଡ଼ାଲୁଣ ମା୭୩୦ ।

**ପ୍ରଥମ ଭାଣୁଦେବ ରଜାକଂର ଦତ** କୋ**[73a]**ଠଦେଶୁ ***କୋରାମୋଳୋ*** ବିସେ ପାରୀସୁରୀ ବିଳା ଗ୍ରାମ ବା୪।୧।୧୫ । **ପୁବଦିଗ** ଦଣ୍ଡପାଟେ ଖାମ୍ଭଲୋବିଧାଂ ବା୧୫ **ଥାହାର** ଦଣ୍ଡପାଟେ ଧୂପ ସିଘାଂର ଭାଗକୁ ପକଂପାଳ ବିଂଧା ବା୧୦ । **ଚଉବିସକୁଦ** ଦଣ୍ଡପାଟେ ଦଅଣା ମକୁଟ ଶ୍ରୀଭୁଜ ଶ୍ରୀପୟର ସଜକରିବାକୁ ପାଳିପଦା ଗ୍ରାମୁ ବା୩୦।୨। ଶ୍ରୀପୁରୁଷୋତ୍ତମ କ୍ଷେତ୍ରରଂ ଦିଲାକ୍ଷା ଅମୁଖଣ୍ଡ ପାଳିପାଦି ୧ ମାଲପାହି ୫ ଲେବରସ ୧୦ ଦି୩୬୫୦ ପାହି ୧୮୨୫୦ ଏ ପାହି ୧ କା୧ ଲେଖାଏ କଉଡ଼ି କା୧୮୨୫୦ ବିଲାକେଉଟ ଅଡ଼ଗଂ ଏ ପଶରା ଅଡ଼ଗଂ କଏଣା ମ ଧ କରୁ କା୧୪୬୦ କାପଡ଼ ପସରା କଏଣାରୁଂ ବା୩୬୫ ଗାଏ ପଦ୨୦ କା୧୮୨୫ ଗାଏ ଚାରି ଦଣ୍ଡପାଟେର କ୍ଷେତ୍ରର ମଧ୍ୟକୁ କ୍ଷତ୍ର ଭୂମି ବା୯୬।୧୭। କଉଡ଼ି କା୧୮୨୫ ।

**ଦୁତିଅ ପଥୁଭାନୁଦେବ ରଜାକଂର** ଦତ **ଦଖିଣଦିଗ** ଦଣ୍ଡପାଟେ ***ରାହାଙ୍ଗ*** ବିସେ ଅଲନ୍ତା ଗ୍ରାମ ରହଣିଭୂମି ବା୧୯୮।୧୦। ***କୋଠରୋହାଗଂ*** ବିସେ ବାସୁକେରା ଗ୍ରାମ ବା୩୩।୭ । ପଛିମିଣ୍ଡୋ..ଲି ବା୫୫।୧୧। ଜିତିକାର ସାସନକୁ ଖଣ୍ଡେ ହେତା ଗ୍ରାମ ବା୧୦।୧୦। ଗାଏ ଦେସଗ୍ରାମ ୨୮ ବା୬୬।୧୦। ***ଓଲଧାର*** ବିସେ ହାଇଓଡ଼ା ଗ୍ରାମ ବା୧୫ ଦୁବୁଢ଼ରା ଗ୍ରାମୁ ବା୯।୬ । ଗାଏ ଗ୍ରାମ ୨୮ ବା୨୪।୬ । ***ବାଁଆଚାସ*** ବିସେ ବେଗନୁଆ ଗ୍ରାମ ବା୨୮।୧୦ । ମରିଦୋ ଗ୍ରାମ ବା୫୬।୬ ଗାଏ ଗ୍ରାମ ୨ଭୂମ ବା୮୪।୧୬ । ***ଅନ୍ତରଧ*** ବିଂସେ ପାଳସାରୁ ଗ୍ରାମ **[73b]** ତିଉଣପୁର ଗ୍ରାମ ବା୧୫। ଜିତିକାରୁକୁ ...ରରି ବିଂଧା ବା୧ । ଅସାଂଲୋ ବିଂଧା ବା୪ ଗାଏ ଗ୍ରାମ ୨ ବିଂଧା ୨ଭୂମି ବା୫୦।୧୦। ଗାଏ ଦଖିଣଦିଗ ଦଣ୍ଡପାଟେ ବିସେ ୬୮ ଦେସଗ୍ରାମ ୧୦ ବିଂଧା ୨୮ ଭୂମି ବା୪୫୭।୧୦। **ପୁବ୍ବଦିଗ** ଦଣ୍ଡପାଟ ବିସେ ୧୮ ଅଳାମୋଦା ଗ୍ରାମ ବା୨୫ । ରିଡ଼ଙ୍ଗ ଗ୍ରାମ ବା୪୭ । ଗାଏ ଦେସଗ୍ରାମ ୨୮ । ***..ଥିହାର*** ଦଣ୍ଡପାଟେ ବେତଣ୍ଡି ଗ୍ରାମ ବା୪୨ । **ସରପଡ଼ା** ଦଣ୍ଡପାଟେ ବିସେ ୧୮ ସାଳବଣିଆ ଗ୍ରାମ ବା୪୦। **ସୋରୋ** ଦଣ୍ଡପାଟେ ***ସରଘର*** ବିସେଅରେ ଝାଡ଼କଟା ବଂରହପୁରକୁ ଗଂଗଂପୁରଗ୍ରାମ ବା୩୦। **ରେମୁଣା** ଦଣ୍ଡପାଟେ ***ଲୁଣିଖଣ୍ଡ*** ବିସେଅର ଝାଡ଼କଟା ବ୍ରହ୍ମପୁରକୁ ଥାଳିଆ ଗ୍ରାମ ବା୩୦ ବିସେ ଅଳାବସାଣ... ରୋସୋଚକରିଆ ଅଢ଼ାରେ ଖରଡ଼ାଲୁଣ ମା୫୪୫୬। ଗାଏ ଛ, ଦଣ୍ଡପାଟେ ଛ ଦେସଗ୍ରାମ ୧୬ ବିଂଧା ୨ ଅଳାବସାଣ ୧ ମଧର ଭୂମି ବା୬୭... ଅଳାବସାଣ ଖରଡ଼ାଲୁଣ ମା୪୫୬।

**ଭୀତିଅ ...ଳାପ ଭାଣୁଦେବ ରଜାକଂର** ଦତ । ଶ୍ରୀପୁରୁଷୋତ୍ତମ କ୍ଷେତ୍ର ନାଟମାନରଂ କଉଡ଼ି ଦେଲେ ପ୍ରତେଆକର କା୧୫୦୦ । ଏ ହାଟ ବଯାରୁ କା୨୦୪୦ ଗାଏ ପଦ ୨୮ କଉଡ଼ି କା୨୭୪୦ । **ଦଖିଣଦିଗ** ଦଣ୍ଡପାଟେ ***କୁରଳୋ*** ବିସେ ଅଶ୍ରପଂଅଳାର ରୋସୋଚକରିଆ ଅଢ଼ାରେ ଖରଡ଼ାଲୁଣ ମା୯୭ ।

**ଚତୁର୍ଥ ବାର... ଦେବ ରଜାକଂ** ଦତ **କୋଠଦେସ** ଦଣ୍ଡପାଟରୁ ***ତମାଳୋ*** ବିସେର ଚି**[74a]**ତ୍ରୋଳା ଗ୍ରାମ ବା୭୫ର ଅନ୍ତରା ଗ୍ରାମ ବା୬୬।୧୫। ବଡ଼ସୁରୁବଳା ଗ୍ରାମ ବା୭୪।୩ । ଭାବପୁର ଗ୍ରାମ ବା୮୮ ଗାଏ ଦେସଗ୍ରାମ ୪୮ ଭୂମି ବା୩୦୩।୧୮ । **ସିରାଇ** ଦଣ୍ଡପାଟେ ***ସିରାଇ*** ବିସେ...ରପାଂ ଗ୍ରାମ ବା୪୧।୧୦। ...ଦଣ୍ଡପାଟେ ଜେଷ୍ଟ ମାଘ ବିସେ ମାଳିଜଗଂ ଗ୍ରାମ ବା୧୫।୧୦। କୋମାଳି ଗ୍ରାମ ବା୨୮।୫ । ଗାଏ ଦେସଗ୍ରାମ ୨୮ ବା୪୩।୫। **ଆସିକା** ଦଣ୍ଡପାଟେ ମୁଠାରେ ଓଳୋଯା ଗ୍ରାମ ବା୫୦ **ପୁବୁଦିଗ** ଦଣ୍ଡପାଟେ ବିସେଅରେ ଝାଡ଼ପଡ଼ା ଗ୍ରାମ ବା୧୯।୧୧। **ଦଖିଣଦିଗ** ଦଣ୍ଡପାଟେ ***ରାହାଗଂ*** ବିସେ ଜିତିକାରକୁ ଘୋସଡ଼ପଡ଼ା ଗ୍ରାମ ବା୧୬ । ଏ **ମାହାରାଜାକଂ ଚଣ୍ଡମାଦେବି ପାଟ ମହାଦେବିକଂ** ଭୋଗକୁ ଦୁଲାଳପୁର ଗ୍ରାମର ବିଧାଂ ୧୮ ବା୫୩।୨୮ ଗାଏ ବିସେ ୧୮ କା୧୮ ବା୬୯୨ ***କୁରୁଳୋ*** ବିସେ ଅଶ୍ରଗଂଅଳାରୁ ଅଳାବସାଣ

ଲୁଣଚକରିଆ ଅଢ଼ାରେ ଖରଡ଼ାଲୁଣ ମା୭୩୦ ***ଓଳଧାର*** ବିସେ ଚଣ୍ଡମା ପାଟ ମହାଦେବିକଂ ଭୋଗକୁ ଅଲସା ଗ୍ରାମ ବା୧୫୪।୧୪। ***ସାଇଲୋ*** ବିସେ ବାସିଲେଗା ବା୧୩।୧୦। ଗାଏ ଦକ୍ଷିଣଦିଗ ଦଣ୍ଡପାଟେ ବିସେ ୪୬ ଦେସଗ୍ରାମ ୩ ବିଂଧା୧ ଅଳାବସାଣ ୧୬ ମଧ କରି ଭୂମି ବା୨୩୭।୬ ଲୁଣ ମା୭୩୦ ଗାଏ ଛ ଦଣ୍ଡପାଟେ ଦେସଗ୍ରାମ ୧୧ ବିଂଧା ୧ ଅଳା ୧ ଭୂମି ବା୬୯୬।୯। ଖରଡ଼ା ଲୁଣ... ଗାଏ ଗଙ୍ଗବଂସ ରଜାମାନଙ୍କ ଦତ୍ତର ଦଣ୍ଡପାଟ ...୬ ଦେସଗ୍ରାମ ୧୧୦ ବିଂଧା ୯ ଭାଗେ ୧ ବାଢ଼େ ୧ ଯେଟୀ ବଂରହପୁର ୨୬୯... [74b] ବା୫୬...୧୨।୨୦। କଉଡ଼ି କା୪୫୬୫ ଖରଡ଼ାଲୁଣ ମା୧୨୮୩ ।

[75a] ସୂର୍ଯବଂଶରେ ଆଦିପାଟ **କପିଳେଶ୍ୱରଦେବ ମାହାରାଜାକଂ** ଦତ ଏ ମାହାରାଜାଙ୍କର ଭାଗ ଭିଆଣ ଚଉବିସି ଚଉଠ ୨୪୬ ଏ ଚଉଠ ୧୬ କଉଡ଼ି କା୩୦୦୦ ଲେଖାଏ କା୭୨୦୦୦ ଏ ବାହାରେ ପରମେଶ୍ୱରକଂ ନାନା ଆଡ଼ତିକି ମଧକରି ଦେସ ଦିଲେ **ଦକ୍ଷିଣଦିଗ** ଦଣ୍ଡପାଟେ ***ରାହାଙ୍ଗ*** ବିସେ ଆଳସରଙ୍ଗ ଗ୍ରାମ ୧୬ ତୋଣ୍ଡମଧକର ବା୩୪୫ ପଛିପାଳ ଗ୍ରାମ ବା୨୩୭।୫। ସାହାଣିକେରା ଗ୍ରାମ ବା୧୧।୧୦। ପିଳିପିଳା ଗ୍ରାମ ବା୧୧୯।୫ । ଉତରହଣା ଗ୍ରାମ ବା୧୨୫ ହରିବଲ୍ଲଭ ତୋଟାକୁ ସିଂହାକୁଦା ଗ୍ରାମ ବା...୦ ଏ ତୋଟା ଖେଦା ଭୁଇରୁ କା୬୮ ଜିତିକାର କୁବୀରାଇଂପଡ଼ା ଗ୍ରାମ ବା୪୦ ଏ ମାହାରାଜାକଂ ବହିଲେ **ଝାଡ଼ଦେଇକଂ** ଭାଗକୁ ଦୁଲାଳପୁରୁ ଗ୍ରାମରଂ ବିଂଧା ୧୬ ବା୭୦।୮ ଗାଏ ଦେସଗ୍ରାମ ୭ ବିଂଧା ୧ ତୋଟା କ୍ଷେଦ୍ରା କାଉଁଡ଼ି ମଧକରି ଭୂମି ବା୮୩୯।୩ ତୋଟାଛେଦ୍ରା କାଉଁଡ଼ି ମଧକରି କଉଡ଼ି କା ୬୮୯ । ***କୋଠରାହାଙ୍ଗ*** ବିସେ ଜିତିକାରକୁ ଅଟୀଲୋକେରା ଗ୍ରାମ ବା ୫୮।୧୯ । ଭାରଥିପୁର ଗ୍ରାମ ବା୩୦ ବୁଇଥୁଲ ବିଂଧା ବା୩୦ ଛଣଘର ବିଂଧା ବା୬ ଗାଏ ଦେସଗ୍ରାମ ୨ ବିଂଧା ୨ ଭୂମି ବା୨୪।୧୯ ***ଓଳଧାର*** ବିସେ ବେଲଦଳ ଗ୍ରାମରଂ ବା୧୧।୫। ଜିତିକାରକୁ ବଏରପୁର ଗ୍ରାମ ବା୨୭।୬। ଗାଏ ଦେସଗ୍ରାମ ୨୬ ବା୧୩୮।୧୧ । ***ଅଠାଇସି*** ବିସେ ***ପୁବୋଦୁଆଇ*** ବିସେ ବାଲିପଟ [75b] ଜିତିକାରକୁ ଆମରାଳବିଂଧା ଗ୍ରାମ ବା୧୪ ଗାଏ ଗ୍ରାମେ ୧ ବିଂଧା ୧୬ ଭୂମି ବା୨୪ ***ବାଂଆଚାଷ*** ବିସେ ଏରବଂଗଂ ଗ୍ରାମରୁ ଭୂମି ବା୨୮୦।୧୦। କୁଣ୍ଡିସ ଗ୍ରାମ ବା୨୧।୮ । ଜିତିକାର କୁଏରବଂଗ ଗ୍ରାମରୁ କତା କରତା ପଦା ବା୭ ଗାଏ ***ଡମାରଖଣ୍ଡ*** ବିସେ ରାଇଁସ ଗ୍ରାମ ବା୫ । କା୧୯୦ ମାହାରାଜାକଂ ଦତ ପୋଅ କରାଏ ଜେନାକଂ ଭାଗକୁ ***ସାଇଲୋ*** ବିସେରୁ ବୀଲା ମଉରା କୋଆଳ ଗ୍ରାମ ୨୬ ବା୩୪।୧୫। ଗାଏ ***କୁରୋଳୋ*** ବିସେ ଅଶ୍ରଙ୍ଗ ଅଳାରଂ ରୋସୋଚକରିଆ ଅଡ଼ାରେ ଖରଡ଼ା ଲୁଣ ମା୩୨୬୭ଣ ଗାଏ ବିସେ ୭୬ ଦେଶଗ୍ରାମ୧୭ ବିଂଧା୫ ଭୂମି ବା୧୬୨୧।୧୫ ଡିହି ଦେସ କଉଡି କା୬୮୯ ଅଢ଼ାର ଲୁଣ ମା୩୨୬୭ । **କୋଠଦେସ** ଦଣ୍ଡପାଟେ ବୋଧୋଖଣ୍ଡି ଗ୍ରାମ ବା୭।୧୩। **ସିରାଇ** ଦଣ୍ଡପାଟେ ଶ୍ରୀଗୁଣ୍ଡିଚାଯାତ୍ରା ଶର ମଣ୍ଡଣିକି

ଚାର ସାଢ଼ି ଚମଡ଼ି ଖ୩୦୦ । **ରାଜମହିନ୍ଦ୍ର** ଦଣ୍ଡପାଟେ ଅନେକାନ୍ଦୋଳ ସିନ୍ଧୁଆ ପେଣ୍ଡ ୧୬ ବା୧୨୫ **କୋଦଣ୍ଡା** ଦଣ୍ଡପାଟେ ଅଥଗଂଗ୍ରାମ ବା୭୦ । **ଚଉବିସକୁଦ** ଦଣ୍ଡପାଟେ ଶ୍ରୀଗୁଣ୍ଡିଚା ଯାତ୍ରା ତାରମଣ୍ଡଣିକି ତାର ଚମଡ଼ି ସାଢ଼ି ମୃ୩୦୦ । **କଣ୍ଢିଆ** ଦଣ୍ଡପାଟେ ***ନାଗଗାଂ*** ଚଉରେ ତେନ୍ତୁଳିଆଖୁଣ୍ଡି ଗ୍ରାମରୁ କଣ୍ଢିହର ପତ୍ର ନିପେଣ୍ଡକୁ ବା୩୧ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ୧୬ ଲୁଣ ପେଣ୍ଡରୁ ଭାଗକୁ ବସାଣ ଲୁଣ ମା୮ ଲେ. ବରସ ୧୬ ଦି୩୬୫୬ ଲୁଣ ମା୨୯୨୦ଣକୁ ଏ ମା ୭୬ ନ୧ ଲେ ନ୪୧୭।୧୬ ଏ ନ୧୬ **[76a]** କା୧ ଲେଖାଏ କଉଡ଼ି କା୫୪୭ ହାଟ ବଯାର ବସାଣରେ ଦି୧୬ ମୁଣୋହିକି ଗୁଆ ଗୋ୧୫ ଲେଖାଏ ହି **୫୪୭।୫୬** ଗାଏ ଦଣ୍ଡପାଟେ ୭ ଦେସଗ୍ରାମ ୨୧ ବିଂଧା ୫ ଅଳାଓଣେ୧ କ୍ଷେତ୍ରେ ହା କ୍ଷେତ୍ରା କଉଡ଼ି ହାଟ ବଯାର କଉଡ଼ି ଖରଡ଼ି ମଧ କରି ଭୂମି ବା୧୮୫୫।୮। କଉଡ଼ି କା୬୧୫୨ ଖରଡ଼ାଲୁଣ ରୋସ ଚକରିଆ ଅଢ଼ାରେ ମା୩୨୬୭ଣ ଗୁଆ ଗାହି ୫୪୭।୫ଟା ।

**ପୁରୁଷୋତ୍ତମଦେବ ମାହାରାଜାକଂର** ଦତ **ଦକ୍ଷିଣଦିଗ** ଦଣ୍ଡପାଟେ ***ରାହାଗଂ*** ବିସେ ଡ଼ିମିରିଷେଣା ଗ୍ରାମ ବା୨୯୩ । ... ତଳଜଂଗ ଗ୍ରାମ ବା୧୦୭।୪। ଉତରହଣା ଗ୍ରାମ ବା୬୦।୧୫। ପାଟେଳି ଗ୍ରାମ ବା୫୪।୮। ବୁଧେଗଂ ଗ୍ରାମ ବା୩୫।୧୫। ଅମ୍ବାର ଗ୍ରାମ ବା୭୧।୧୫। ଆଳତିଆ ଗ୍ରାମୁ ବାରିଭୁଇ ବା୧୨ । କାଣ୍ଡଗୋଦା ଗ୍ରାମ ୧୬ ବିଂଧା ବା୬୮।୩ । ଦୁଲାଳପୁର ଗ୍ରାମ ବିରିନିକିଳା ବା୬ ଜିତିକାରକୁ ଗୋବା ବାଲିଆ ଗ୍ରାମ ବା୧୧୨।୧। ଗଗଂପୁର ଗ୍ରାମୁ ବା୧୬ ଏ ଗ୍ରାମର ବାଲିଆତୋଟାକୁ ବା୨ ଜିତିକାରକୁ ବା୨ ଗାଏ ବା୨୦ । ଭିଖାରିପଡ଼ା ଗ୍ରାମ ୧୬ ମଇଲମ ମେଇକାପକୁ ବା୨୬ । **ଶ୍ରିୟା ମାହାଦେବିକଂ** ତୋଟାକୁ ଦୁଲାଳପୁର ଗ୍ରାମରୁ ବା୧୧।୧୫। ଚମାରକେରା ବା୫ । ପିଳିପିଳା ଗ୍ରାମରୁ ବା୨।୧୦। ଉତରହଣା ଗ୍ରାମରୁ ବା୦।୧୪। ଗାଏ ବିଂଧା ୪୬ ବା୧୯।୧୯ ।

**ସିଙ୍ଗମା ମହାଦେବିକଂ** ଦତ ଗିତବସାଣ ବଇଷ୍ଣବକୁଂ ବା୧ ଏହାକଂ ତୋଟାକୁ ତେଟା ଛେଦରା ... ୪୫୨ କଉଡ଼ି ପ୍ର**[76b]**ଳ ଟକାଂ ଟ୫୦୭୬ ଏ ଟ୧୬ କା୮ ଲେ କା୪୦୫୭ ଏ ବିସେଅରୁ ଧାନ ମୂଳ ଅବଦାନ ଟକାଂ ଟ୫୯୮। ୬ଏ ଟ୨୬ ଧାନ ଭ୧ ଲେ. ଭ୨୯୯ ନ୩୦ କଟକ କନକଦୁର୍ଗା ଦେବିକଂର ମହାଷ୍ଟମି ପରବକୁ ଏ ବିସେଅରୁ ଭିଆଣ ବୋଦା ସୋଦେମୁମାନର ଘେନିମାର ବୋଦା ଗୋ୧୩୮ ... ଭିଆଣ କା୧୪ ଲେ. କା୧୯୩୨୬ ଏ ବୋଦା ନଅରେ କିଣା ଖଜୀବାକୁ କା୬ ଲେ. କା୮୨୮ ଯାଇ ଏ ସମଧର ବୋଦା ନିକଳା କଉଡ଼ି କା୧୧୦୪ ଗାଏ ପଦ ... ୬ ଦେସଗ୍ରାମ ୯ ବିଂଧା ୪ ବିରିମୁଦାଣ୍ଡ ୧ ବିରିଭୁଇଂ ୨୧ ଖୁଦର..ଦ ୫ ଛେଦରା ଭୁଇଁ ଡ଼ିହ ପ୍ରତେଆ ଧାନ ଧୂନ ଅବଦାନ ଟକାଂ ବୋଦା ନିକଳା କଉଡ଼ି ମଧ କରି ଭୁଇଁ କା୮୯୮।୧୧। ଧାନ ଭ୨୯୯।୩୦ କଉଡ଼ି କା୫୨୦୬ । ***କୋଠରାହାଗଂ*** ବିସେ ଭୁଇଂ ବା୩୪।୭ ।

ଆଳିସଂଗ୍ରାମ ବା୩୫।୧୧। ବାସୁକେରା ହା୪୧୮ ବା୪।୬। ଜୋପନଗ୍ରାମ ବା୩୦ । **ଅମ୍ବିକା ମାହାଦେବିକଂ** ତେତାକୁ ଛେଦରା ଭୂଇଂ ଡ଼ିହ ପ୍ରତେଆ ମଧକରି କଉଡ଼ି କା୧୩୨ ଏ ବିସେଅରୁ ଧାନ ମୂଲ ଅବଦାନ ଟ୬୮୍ୟ ଏ ଟ୨୮ ଧାନ ଭ୧ ଲେ. ଧାନ ଭ୩୪ ନ୩୦ ବୋଦା ନିକଳା କଉଡ଼ି ଏ ଦେଉଳ ଦେସମାନର ବୋଦା ଗୋ୧୩୮ ଏ ଗୋ୧୮ ଘେନାଣ କା୧୪୮ କଟେକ ଲେଖାଉଣି କା୬ ଯାଇ ନିକର କା୮ ଲେ କା୧୦୪ ଗାଏ ଦେସଗ୍ରାମ ୩ ହାଟ ୧ ଧାନ ଅବଦାନ ଟକାଂ ବୋଦା ନିକଳା କଉଡ଼ି ତୋଟା **[77a]** ... ... କଉଡ଼ି ମଧକରି ଭୂଂଇ ବା୧୦୪୪ । ଧାନ ଭ୩୪।୩୦ କଉଡ଼ି କା୪୭୬ । ***ପୂବୋଦ୍ୱୋଆଇ*** ବିସେ ୧୮ ଏ ବିସେଠାରେ ଧାନମୂଳ ଅବଦାନ ଟକାଂ ୬୮୫୮ ଏ ୨ ଟଙ୍କା ଧାନ ଭ୧ ଲେ. ଭ୩୪୨।୪୦ କଉଡ଼ି ମୂଲ ଅବଦାନ ଟକାଂ ଟ୪୫୨୮୍ୟ ଏ ଟ୧୮ କା୮ ଲେ. କଉଡ଼ି କା୩୬୨୦ ।

କନକ କନକଦୁର୍ଗା ଦେବିଙ୍କର ମାହାଷ୍ଟମି ପରବ ବୋଦା ଗୋ୪୫୮ ଏ ଗୋ୧୮ କା୧୪ ନଅରେ ଲଗାଉ କା୬ ଲେ. ଜାଇଂ ନିକର ଘେନିମାର କା୮ ଲେ. କା୩୬୦ ଗାଏ ପଦ ୩୮ ଧାନ ଭ୩୪୨।୪୦। କଉଡ଼ି କା୩୯୮୦ । ***ପଞ୍ଚମିଶୋଆଇ*** ବିସେ ଧାନମୂଳ ଅବଦାନ ଟଙ୍କା ଟ୨୯୭୍ୟ ଏ ଟ୨୮ ଧାନ ଭ୧୮ ଲେ. ଭ୪୮।୬୦। କଉଡ଼ି ମୂଲ ଅବଦାନ ଟକାଂ ଟ୧୯୨୮ ଏ ଟ୧୮ କା୮ ଲେ. କା୧୫୪୦ ।

କଟକ ଶ୍ରୀନଅର କନକଦୁର୍ଗାଦେବିକଂ ମହାଷ୍ଟମି ପରବ ବୋଦା ଭିନିକଳା କଉଡ଼ିକି ବୋଦା ଗୋ୨୯୮ ଏ ଗୋ୧୮ କା୧୪ ନଅର ଲଗାଉଣି କା୬ ଯାଇ ନିକର କା୮ ଲେ. କା୨୩୨ ଗାଏ ଧାନ ଭ୪୮ନ୬୦ କଉଡ଼ି କା୧୭୭୨ । ***ଓଳଧାର*** ବିସେ ୧୮ ଶ୍ରୀରିପଡ଼ା ଗ୍ରାମ ବା୩୦।୫। କଣ୍ଟାସାଳ ବିଂଧା ୧୮ ବା୨୫ ଓଡ଼ତରା ଗ୍ରାମ ବା୭।୧୦। ଗାଏ ଦେସଗ୍ରାମ ୨ ବିଂଧା ୧୮ ରହଣିଭୂମି ବା୬୨।୧୫। କଉଡ଼ି ମୂଳ ଅବଦାନ ଟକାଂ ଟ୨୪୦୮ ମମଧକୁ ଏ ବିସେଅରୁ ଟ୪୬୪୮ ଏ ଟ୧୮ କା୮ ଲେ. କା୩୭୧... । ଧାନ ମୂଳ ଅବଦାନ ଟ୨୦୦୮ ସମଧକୁ ଟ୪୪୪। ୮ ଏ ଟ୨୮ ଧାନ ଭ୧ ଲେ. ଭ୨୨୨।୧୫ ।

**[77b]** କଟକ ଶ୍ରୀନଅର କନକଦୁର୍ଗାଦେବିକଂ ମହାଷ୍ଟମି ପରବ ବୋଦା ଭିଆଣକୁ ବୋଦା ଗୋ୭୫୮ ଏ ଗୋ୧୮ କା୧୪୧ ଶ୍ରୀନଅର ଲଗାଉଣି କା୬ ଯାଇ ନିକର ଘେନିମା କା୮ ଲେ. କା୬୦୦ ଗାଏ ଦେସଗ୍ରାମ ୨ ବିଂଧା ୧ କଉଡ଼ି ମୂଳ ଅବଦାନ ଟକାଂ ଧାନମୂଳ ଅବଦାନ ଟକାଂ ମହାଷ୍ଟମି ବୋଦା ନିକଳା ମଧ କରି ଭୂମି ବା୬୨।୧୫। କଉଡ଼ି କା୪୩୧୨ । ଧାନ ଭ୨୨୨।୧୫। ***ଅଠାଇସି*** ବିସେ କଉଡ଼ି ମୂଳ ଅବଦାନ ଟକାଂ ଟ୨୪୦୮ ସମଧକୁ ଏ ବିସେଅରୁ ଦେଲା ଟ୪୧୮ ଏ ଟ୧୮ କା୮ ଲେ. କା୩୩୦ ଧାନମୂଳ ଅବଦାନ ଟକାଂ ଟ୨୦୦୦ ସମଧକୁ ଦେଲା ଟ୧୩୍ୟ୮ ଏ ଟ୨୮ ଧାନ ଭ୧ ଲେ. ଭ୬।୭୦ ।

କଟକ ଶ୍ରୀନଅର କନକଦୁର୍ଗା ଦେବିକଂର ମହାଷ୍ଟମି ପରବକୁ ବୋଦା ଭିଆଣ ସମଧକୁ ବୋଦା ଗୋ୩୵ ଏ ଗୋ୧୵ କା୧୪୵ ଶ୍ରୀନଅର ଲଗାଉଣି କା୬ ଯାଇଂ ନିକର କା୮ ଲେ. କା୨୪ ଗାଏ କଉଡ଼ି ମୁଳ ଅବଦାନ ଟକାଂ ଧାନମୁଳ ଅବଦାନ ଟକାଂ ବୋଦା ନିକିଲା କଉଡ଼ି ମଧ କରି କଉଡ଼ି କା୩୫୪ ଧାନ ଭ୬।୭୦। ବାଂଆଚାସ ବିସେ ୧୵ ଗୋପପୁର ଗ୍ରାମ ୧୵ ରହଣି ଭୁମି ବା୧୩୯।୬। କଉଡ଼ିଭାଗ ଅବଦାନ ଟକାଂ ଟ୨୪୦ ଏ ଟ୧ କା୮ଲେ. କା୧୪୨୩ । ଧାନମୁଳ ଅବଦାନ ଟକାଂ ଟ୨୦୦୦ ସମଧକୁ ଟ୫୭୫ ୵ ଏ ଟ୨୵ ଧାନ ଭ୧ ଲେ ଭ୨୮।୬୫ ।

କଟକ ଶ୍ରୀନଅର କନକଦୁର୍ଗା ଦେବିକଂ ମହାଷ୍ଟମି ପରବ ବୋଦା ନିକିଲା କଉଡ଼ି ବୋଦା ଗୋ୨୦ କୁ ଏ ଗୋ୧ କା୧୪୵ କଟକ ଲଗାଉଣି **[78a]** କା୬ ଯାଇ ନିକର କା୮ ଲେ କା ୧୬୦ ଗାଏ ପଦ ୧୵ ଦେସଗ୍ରାମେ ୧ କଉଡ଼ିମୁଳ ଅବଦାନେ ୧ ଧାନମୁଳ ଅବଦାନେ ୧ ବୋଦା ନିକିଲା କଉଡ଼ି ପଦେ ୧ ମଧକରି ଭୁମି ବା୧୩୯।୬ କଉଡ଼ି କା୧୫୨୩ ଧାନ ଭ୨୮।୬୫ । ***ଅନ୍ତଗଧ*** ବିସେ ଭିଲିଗ୍ରାମରଂ ଭୁଇଂ ବା୭୪।୧୫ କଉଡ଼ି ମୁଳ ଅବଦାନ ଟକାଂ ଟ୨୪୦୮ ସମଧକୁ ଟ୧୩୫୫ ୵ଏ ଟ୧୵ କା୮ ଲେ. କା..୦୮୫ ଧାନମୁଳ ଅବଦାନ ଟକାଂ ୨୦୦୦ ସମଧକୁ ଟକାଂ ୩୪। ୵ ଏ ଟ୨୵ ଧାନ ଭ୧ ଲେ. ଭ୧୭।୧୫ ।

କଟକ ଶ୍ରୀନଅର କନକଦୁର୍ଗା ଦେବିକଂ ମହାଷ୍ଟମି ପରବ ବୋଦା ନିକିଲା କଉଡ଼ି ଏ ବୋଦା ଗୋ୮୵ଏ ଗୋ୧୵ କଟକ ଶ୍ରୀନଅର ଲଗାଉଣି କା୬ ଯାଇଂ ଏ ସମଧର କା୮ ଲେ. କା୬୪ ଗାଏ ଦେଶବିଂଧା ୧ କଉଡ଼ି ମୁଳ ଅବଦାନ ଧାନମୁଳ ଅବଦାନକୁ ଧାନ ଭିଆଣ ବୋଦା କଉଡ଼ି ମଧକୁ ୨ ପ୪୵ ଭୁଇଂ ବା୭୪।୧୫। କଉଡ଼ି କା୧୧୪୯ ଧାନ ଭ୧୭।୧୫। ***ଡ଼ମାରଖଣ୍ଡ*** ବିସେ୧୵ କଉଡ଼ିସାଳ ଅବଦାନକୁ ଟ୨୪୦୮ ସମଧକୁ ଟକାଂ ୧୩୩୵ କା୮ ଲେ. କା୧୩୦୮ ମହାଷ୍ଟମି ପରବ ବୋଦା ଗୋ୬୵ କା୮ ଲେ. କା୪୮ ଗାଏ କା୧୩୫୬। ***କୁରୁଲୋ*** ବିସେ ୧୵ ବଜରପଡ଼ା ଗ୍ରାମ ୧୵ ରହଣି ଭୁମି ବା୧୪ କଉଡ଼ି ଭାଗ ଅବଦାନ ଟ୨୪୦୮ ସମଧକୁ ଟ୮୮।୵ ଏ ଟ୧୵ କା୮ ଲେ କା୭୦୬

କଟକ ଶ୍ରୀନଅର କନକଦୁର୍ଗା ଦେବିକଂ ମହାଷ୍ଟମି ପରବ ବୋଦା ନିକିଲା କଉଡ଼ିର ବୋଦା ଗୋ୩୵ ଏ ଗୋ୧୵କା୧୪ ଶ୍ରୀନଅର ଲଗାଉଣି କା୬ ଯାଇ ନିକର **[78b]** କା୮ ଲେ. କା୨୪ ଗାଏ ଦେସଗ୍ରାମ ୧ କଉଡ଼ି ଭାଗ ଅବଦାନ ବୋଦା ନିକିଲା କଉଡ଼ି ମଧ କରି ପଦ ୩୵ ଭୁମି ବା୧୪ କଉଡ଼ି କା୭୩୦ ***କାଟେ*** ବିସେ ୧୵ ପଏଗାଂ ଗ୍ରାମରୁ ବିଂଧା ୧୵ ବା୪୦ କଉଡ଼ିମୁଳ ଅବଦାନ ଟ୨୪୦୮ ସମଧକୁ ଟ୪୫୵ ଏ ଟ୧ କା୮ ଲେ. କା୪୪୦

କଟକ ଶ୍ରୀନଅର କନକଦୁର୍ଗାଦେବିଙ୍କ ମହାଷ୍ଟମି ପରବ ବୋଦା ନିକିଳା କଉଡ଼ିରୁ ବୋଦା ଗୋ୧୨୮ ଏ ଗୋ୧୮ କା୧୪୮ ଶ୍ରୀନଅରର ଲଗାଉଣି କା୬ ଯାଇଂ ନିକର କା୮ ଲେ. କା୯୬ ଗାଏ ଦେସବିଂଧାଂ ୧ ଏ ଅବଦାନେ ବୋଦା ନିକିଳା ମଧ ପଦ ୩୮ ଭୁମି ବା୪୦ କଉଡ଼ି କା୫୩୬ । ***ଦେଗାଂ*** ବିସେ ୧୮ ସାଳେ ବିଂଧା ୧୮ ଭୁମି ବା୨୪୮ ଚୋଖେ ବା୩୦ କଉଡ଼ି ଭାଗ ଅବଦାନ ଟକାଂ ୨୪୦୮ ସମଧର ଟ୨୧।/୮ କା୮ ଲେ. କା୧୭୫

କଟକ ଶ୍ରୀନଅର କନକ ଦୁର୍ଗାଦେବିଙ୍କ ମହାଷ୍ଟମି ପରବ ବୋଦା ନିକିଳା କଉଡ଼ିର ବୋଦା ଗୋ୫୮ ଏ ଗୋ୧୮ କା୧୪୮ ଶ୍ରୀନଅର ଲଗାଉଣି କା୬ ଯାଇଂ ନିକର କା୮ ଲେ. କା୪୦ ଗାଏ ଦେସବିଂଧା ୧ ଅବଦାନ ଟକାଂ ବୋଦା ନିକିଳା କଉଡ଼ି ମଧ ପଦ ୩୮ ଭୁମି ବା୩୦ କଉଡ଼ି କା୨୧୫ । ***ମରଢ଼*** ବିସେ ୧୮ କଉଡ଼ିମୂଳ ଅବଦାନ ଟ୨୪୦୮ ସମଧକୁ ଟ୬...୮ ଏ ଟ୧୮କା୮ ଲେ.କା୫୦ । ***ସାଉଲୋ*** ବିସେ ୧୮ ଭୋକାକୀଂ ଗ୍ରାମ ୧୮ ଭୁମି ବା୩୧।୧୫। ପାଟେଳି ଗ୍ରାମ ବା୧୬ ଗାଏ ଦେସଗ୍ରାମ୨୮ ଭୁଇ ବା୪୭।୧୫। କଉଡ଼ିମୂଳ ଅବଦାନ ଟକାଂ ୨୪୦୮ ସମଧକୁ ଟ୫୦੫/୮ **[79a]**ଏ ଟ୧୮ କା୮ ଲେ. କାହାଣ ୪୦୫

କଟକ ଶ୍ରୀନଅର କନକଦୁର୍ଗାବେଦିକଂ ମହାଷ୍ଟମି ପରବ ବୋଦା କଉଡ଼ିରୁ ବୋଦା ଗୋ୭୮ ଏ ଗୋ୧ କା୧୪୮ ଶ୍ରୀନଅର ଲଗାଉଣି କା୬ ଯାଇଂ ଘେନିବାର କା୮ଲେ. କା୫୬ ଗାଏ ଦେସଗ୍ରାମ ୨ ଅବଦାନେ ୧ ବୋଦା ନିକିଳା କଉଡ଼ି ମଧ କରି ପଦ ୩୮ ଭୁମି ବା୪୭।୧୫। କଉଡ଼ି କା୪୬୧ । ***କୁପାହାର*** ବିସେ ୧ କଉଡ଼ିମୁଳ ଅବଦାନ ଟକାଂ ୨୪୦୮ ସମଧକୁ ଦେଲା ଟ୧୦੫/୮ ଏ ଟ୧୮ କା୮ ଲେ. କା୮୫ କଟକ ଶ୍ରୀନଅର କନକଦୁର୍ଗା ବେଦିକଂ ମହାଷ୍ଟମି ପରବ ବୋଦା ନିକିଳା କଉଡ଼ିର ବୋଦା ଗୋ୨ ଏ ଗୋ୧୮ କା୧୪୮ ଶ୍ରୀନଅର ଲଗାଉଣି କା୬ ଯାଇଂ ନିକର କା୮ ଲେ.କା୧୬ ଗାଏ ପଦ ୨୮ ଅବଦାନେ ୧ ବୋଦା ନିକିଳା କଉଡ଼ି ମଧ କା୧୦୧ ଗାଏ ଦଖିଣଦିଗ ଦଣ୍ଡପାଟ ବିସେ ୧୬ ସମଧର ବିସେ ୧୫ ଅରୁ ଦେସଗ୍ରାମ ୧୬ ବିଂଧା ୧୧ ବାରିଭୁଇଂ ୧ ହାଟେ ୧ ଡିହି ଛେଦରା ୧ ମଧ କରି ଭୁଇଂ ବା୧୪।୧।୬୮ କଉଡ଼ି କା ... ଅବଦାନ ଟକାଂ ୨୪୦୮୮ ଏ ଟ୧୮ କା୮ କା... ଧାନମୂଳ ଅବଦାନ ଟ୨୦୦୦ ଏ ଟ୨୮ ଧାନ ଭ୧ ଲେ. ଭ୧୦୦୦୮ ଭ୧୮ ଲେ. କା୧୮୦୦୦

କଟକ କନକଦୁର୍ଗାଦେବିଙ୍କ ମହାଷ୍ଟମି ପରବ ବୋଦା ଭିଆଣ ବୋଦା ସମଧର ବୋଦା ଗୋ୩୭୮୮ ଏ ଗୋ୧୮ କା୧୪୮ ନଅର ଲଗାଉଣୀ **[79b]** କା୬ ଯାଇଂ ନିକର ଘେନିମା କା୮ ଲେ. କା... ଡ଼ିହଭେଦାର କଉଡ଼ି କା୧୩୨ ଗାଏ କା...୮ କଉଡ଼ି କା... କୋଠଦେଶ ଦଣ୍ଡପାଟେ ନୀନାଗାଂ ଖଣ୍ଡି ହେତା ଗ୍ରାମ ୧୮ ଭୁମି ବା୨୯

ପୁବଦିଗ ଦଣ୍ଡପାଟେ କଟକ ଶ୍ରୀନଅର କନକଦୁର୍ଗା ଦେବିଙ୍କ ମହାଷ୍ଟମି ପରବ ବୋଦା ନିକିଳା କଉଡ଼ିରୁ ଏ ମାହାରାଜାଙ୍କର ଗୋପାଳ ବଲଭ ଭୋଗକୁ ସବୁ ବିସେମାନରୁ ପାଇଲା ବୋଦା କଉଡ଼ିମାନଙ୍କୁ ଏ ବିଶେ ଅରଂ ଲଗାଇଲା ବୋଦା ଗୋ୧୫୯ ଏ ଗୋ୧୯ ଘେନାଣ କା୧୪୯ କଟକ ଶ୍ରୀନଅର ଲଗାଉଣି କା୬ ଯାଇଂ ନିକର କା୮ ଲେ. କଉଡ଼ି କା୧୨୦...

**ଚଉବିସକୁଦ** ଦଣ୍ଡପାଟେ କଉଡ଼ିମୁଳ ଅବଦାନେ ଟ୨୪୦୮ ସମଧକୁ ଟ୧୨୨୯ ଏ ଟ୧୯ କା୮ ଲେ. କା୧୦୦ ଏ ଦଣ୍ଡପାଟେ ଭିଆଣ କାରତିକ ମାସ ଲକ୍ଷଦିପକୁ ଦି୨୨୨୯ ମଥାଦହି କୁ ୩୨୬୨ ମା୭୯ ଏ କୁ୧୯ ଥିଲେ କଉଡ଼ି କା୨୪୪୭ ଗାଏ ପଦ ୨୯ ଆସିକା ଦଣ୍ଡପାଟେ କଉଡ଼ି ମୁଳ ଅବଦାନ ଟକାଂ ଲକ୍ଷଦିପ ମଥାଦହି ଭିଆଣକୁ ମଧ କରି କଉଡ଼ି କା୧୦୦ ମଥାଦହି କୁ୩୨୬୨ ମା୭ ଶ୍ରୀପୁରୁଷୋତ୍ତମ ପେଂଣ୍ଡରଂ ଅମୃତ ମୁଣୋହି ଭୋଗକୁ ତପରି ଖରଡ଼ା ଲୁଣ ରୋସୋ ଅଢ଼ାରେ ମା୧୯୨୦୯ ଏ ମା୭୯ ନ୧୯ ଲେ. ନ୪୧୭୧ ଏ ନ୧୯ କା୧। ଲେ. କା୫୪୭୨ ଶ୍ରୀନଅର ଭଣ୍ଡା**[80a]**ରରୁ ଦିଆହୋଇ ପରବ ଯାତ୍ରାମାନଙ୍କୁ ପୁଷ୍ୟାଅବିଷେକ ଯାତ୍ରାକୁ ଟ୫୦ ନାରାୟଣ ଅବିଷେକ ଯାତ୍ରାକୁ ଟ୫୦୯ ତୁମାର ଉନାବନାବ ଯାତ୍ରାକୁ ଟ୫୦୯ ଗାଏ ପଦ ୩୯ ଟ୧୫୦୯ଏ ଟ୧୯ କା୮ ଲେ. କା୧୨୦୦ ।

**ସୂର୍ଯ୍ୟବଂସ ପ୍ରତାପରଦ୍ରଦେବ ରାଜାକଂ** ଦତକୁ ଏ **ଦକ୍ଷିଣଦିଗ** ଦଣ୍ଡପାଟେ ***ରାହାଙ୍ଗ*** ବିସେ ଅଳଗୁମ ଗ୍ରାମ ୧୯ ଦେଭୋଗ ଦେସହେତା ପଡ଼ି ରହଣି ଭୁମି ବା୨୬୧ ମୁକଳ ଗ୍ରାମ ଗୋ୧ ବା୨୬୦।୭। ବାମଡ଼ା ଗ୍ରାମ ଗୋ୧୯ ରହଣି ଭୁଇଂ ବା୨୧୪।୫ । ବାଣପୁର ଗ୍ରାମ ଗୋ୧୯ ରହଣିଭୁଇଂ ବା୪୮।୨। କାମଲପୁର ହାଟ ଗୋ୧୯ ବା୨୯ କା୬୨୭୨ ଏ ହାଟ ବିରପ୍ରତାପପୁର ଶାସନରେ ପସିଲାକୁ ପ୍ରତାପଦେବ ରାଜା ଏ ପ୍ରତିବଧେ ଦେଲେ ଦେଉଳି ଭୁମରଂ ବା୨।୧୩ । ଏ ମାହାରାଜାକଂ ରାଣି **ପଦ୍ମାଦେଈ ପାଟମହାଦେବିକଂ** ଦତକୁ ହନ୍ତୁକ ଗ୍ରାମ ଗୋ୧୯ ବା୩୭୩।୧୯। ଅଳସା ଗ୍ରାମର ଜଏପୁର ବିଂଧା ବା୨୧।୧୩। ଜିତିକାରକୁ ମନାପୁର ଗ୍ରାମ ଗୋ୧୯ ବା୩୬।୫ । ଅଲଣ୍ଡାପଡ଼ା ତୋଟା୧୯ ସଗଂପୁରୁ ଗ୍ରାମ ବିଧି ୧୯ ବା୨୫।୫। ଜଗନ୍ନାଥବଲ୍ଲଭ ତୋଟା ଗୋ୧୯ କପିଳେଶ୍ୱରପୁର ଶାସନର ହାଟତଳି ବା୪୯ ବରତମାନେ ସାଧନ କଉଡ଼ି କା୯୫୦ କାମଲପୁର ହାଟତଳି କା୬୨୪୨ ବିରପ୍ରତାପପୁରେ ପସିଲାକୁ ଏ ପ୍ରତିବଧେ ଦେଲାର ଇନ୍ଦିପୁର ଦେଉଳି ବା୨।୧୩।୯ କା୮୦ ଯାଇ ଏ ସମଧର ରହଣି କା୫୪୬୨ ଦେଲା ଏ ବିସେ ବାହାର ଲେମ୍ବାଇ କଉଡ଼ିରୁ କା୪୬୨ । ଗୋପାଳପ୍ରିୟ ତୋଟାକୁ ଅଳାଉତା ଗ୍ରାମରଂ ଦଳ ...ଳାନିଗି ଧାରି ଭୁଇଂ ବା୨ ସମଗଂମା ବା୬ ସାସନ ସିଙ୍ଘ ବା୪

**ପୁରୁଷୋତ୍ତମଦେବମାଙ୍କ** ଭୋଗ ଦେସମାନରେ ଖୁଦର କଉଡ଼ି କା୪୩୮ ସମଧର ବେଣା**[80b]**କେରା ଗ୍ରାମରେ କା୧... ... । ରାଜଜୋଗଣ ମେଣ୍ଢା.. କା୫ ।

**ଏହାଙ୍କ ପୁଅ ପୁରୁଷୋତ୍ତମ ଦେଏ ଜେନାଙ୍କ** ଦତର ଗୁଣ୍ଡିଚାଯାତ୍ରା ଚନ୍ଦ୍ର ଉଡିଆ ଭିଆଣକୁ ହରିହର ... ୧୦ କଉଡ଼ି କା୧୫୦ ଗାଏ ଦେସଗ୍ରାମ ଗୋ୬ ବିଂଧା ହାଟ ୩ ଗୋଟି ଖୁଦରକର ପଦ ୧୦ ମଧକରି ଭୁମି ... ... ... ହାଟବିଲ ମଧ କରି କା୧୭୨୬୨/ **ପୁରୁଷୋତ୍ତମଦେବ ରଜାଙ୍କ** ଭୋଗା ଦେସମାନ ଖୁଦରକର କା୧୫୬୩ । କୋଠ ରାହାଗଂ ବିସେ ସୋମପୁର ଗ୍ରାମ ଗୋ୧ ରହଣି ଭୁଇଂ ବା୧୫୦।୧୬ । ଏଥୁ ବାରସ ମକୁନ୍ଦପୁରକୁ ବା୧୧ ଯାଇ ନିକର ବା୧୩୯।୧୬। ଉତରପଡ଼ା ଗ୍ରାମ ବା୬୦ କାନ୍ତପୁର ବିଂଧା ବା୨୦। ଭାରଥିପୁର ବିଂଧା ବା୨୦ । ଏ ଉତ୍ତାରୁ ବିଂଧା ବା୧୭।୫। ଏ ମକୁନ୍ଦପୁର ଶାସନେ ପଶିଲା ବା୧୭।୫। କୋଟି ପଦ୍ମଫୁଲ ଲାଗିକି କଉସୁଲାଗାଗଂ ପୋଖରି ଗୋ୧ । ପଶ୍ଚିମ ଦ୍ୱାର ମାଛ ଭାଗେ ୧ କେଉଟ ଅଡ଼ଗଂ ମାଛରୁ ଭାଗେ ୧ ଗାଏ ଭାଗ ୨୦ ଏ ଫୁଲକୁ ଦେଲା କଉଡ଼ି କା୭୫୦

**ଏ ମହାରାଜାଙ୍କ** ମାଏ ର...ଦେଇ **ଅମାଜିଆଙ୍କ** ଭୋଗକୁ ଦେଲେ ଅରକୋଳ ଗ୍ରାମ ରହଣି ଭୁଇଂ ବା୩୪ ପଦ୍ମାଦେଇ ପାଟ ମହାଦେବିଙ୍କ ଭୋଗବେଳ ନାଟ ଖଟଣି ସମଧରଦା ମେଳ ୧୦ ଖଣ୍ଡିସୋରଗାଂ ଗ୍ରାମ ବା୨୦ ଏ ରଜାଙ୍କ **ଏଲମାରାଣିଙ୍କ** ଭୋଗକୁ ଓଡ଼ପଡ଼ା ଗ୍ରାମ ବା୧୨ ଗାଏ ଦେସ ଗୋ୪ ବିଂଧା ଗୋ୨ ପୋଖୋରି... ... ଭୁଇଂ ବା୩୭।୧୧। କଉଡ଼ି କଉସୁଲାଗାଗଂ ପୋଖୋରି ମଛକୁତା ସମଧର ଭାଗ ୨୦ କଉଡ଼ି କା୭୫୦

***ପୁବୁଡୁଆଜ*** ବିସେରେ ଦେଲା ପୁରୁଷୋତ୍ତମଦେବ ରଜାଙ୍କ ଭୋଗକୁ ରାଜ ଦେସମାନରେ ଖୁଦର କଉଡ଼ି କା୪୩୮ ସମଧକୁ କଉଡ଼ି ଦେଲା ଓଛପୁର ଗ୍ରାମରେ କା୯୦୨ ଦୋକା... **[81a]** ... କା୮୦ ଗାଏ ପଦ ୨୦ କା୧୭୯ ***ଓଳଧାର*** ବିସେ ଚଟାବରଇ ଗ୍ରାମ ଗୋ୧୦ ଭୁମି ବା୨୫ ଗୋପାଳପୁର ଗ୍ରାମ ବା୨୦ ଜିତିକାରକୁ ବଣିଆସାହି ଗ୍ରାମ ବା୩୧।୧୦। ଲକ୍ଷ ଜାଇ ଲକ୍ଷ ତୁଳସି ତୋଟା ବୋରାଗାଂ ଗ୍ରାମ ବା୫୦ ଗୁଣ୍ଡିଚା ନବର ଚୁନକୁ ଅଲତଗିଂ ଗୋକ୍ଷତ୍ର ବା୧୬ ..ରାସା..ଏ ସମରଦା ମେଳକୁ ଦେଲା ସାଳିପଣ ଗ୍ରାମ ବା୧୨ ପୁରୁଷୋତ୍ତମ ଦେବ ରାଜଙ୍କ ଭୋଗକୁରାଜ ଦେଶମାନରେ କଉଡ଼ି କା୪୩୮ ସମଧକୁ ଦେଲା ଏ ବିସେ ଦେସମାନରୁ କଉଡ଼ି କା୧୮୦୨ ଦୋକାହାଣି ମେଣ୍ଢା ଗୋ୧୨୦ କା୬ ଗାଏ ପଦ ୨୦୬ କା୧୮୬୨ ଗାଏ ପଦ ୦ ଦେସ ୫ ଗୋଟି ଗୋକ୍ଷତ୍ର ୧ କଉଡ଼ି ଭାଗ ମଧକରି ଭୁମି ବା୧୫। ...କଉଡ଼ି କା୧୮୬୨ ।...ଚାସ ବିସେ ଗଗଂପୁର ବିଂଧା ୧୦ ଭୁମି ବା୬।୧୦। ଏ ଶ୍ରୀଓରିଆ ଭୋଗକୁ ଏ ବିସେ ଦେସମାନରୁ ଦେଲା ଅବଦାନ କଉଡ଼ି କା୬୨୫୦ ଏ କଉଡ଼ି ଦେସ

ଛାନାଗଂ ଦତ ତଲପ ପତ୍ରେ ଅଛି । ଗାଏ ଦେସବିଂଧା ୧ ଅବଦାନ ପଦେ ୧ ମଧ କରି ଭୂମି ବା୬।୧୦। କଉଡ଼ି କା୬୨୫୦... ... ***ଡମାରଖଣ୍ଡ*** ବିସେକୁ ଜୋଗେଶ୍ୱରପୁର ଗ୍ରାମ ରହଣି ଭୂମି ବା୧୯।୧୨।

ଏହାକଂ ପୁଅ **ପୁରୁଷୋତ୍ତମ ରାଏ ଜେନାକଂ** କୁଅଂର କାଳି ସିତଳକୁ ନରୁଆ ଗ୍ରାମ ନିଗିଧା ବା୫ ରାମାନନ୍ଦ ରାଏ ମେଳ ସମ୍ବରଦାକୁ ପହରାଜପୁର ବା୧୨ ଏ **ପ୍ରତାପଦେବ ରଜାଙ୍କ ରାଇଜେ ହରଣ** । ଗାଏ ଦେସ ୨ ନିଗିଧା ୧୮ ଭୂମି ବା୩୬।୧୨। **[81b]** ***ଅନ୍ତରଧ*** ବିସେ ୧୮ ରାଜଦତ **ରାମାନନ୍ଦ ରାଏ ମେଳ ସମ୍ବରଦାକୁ** ଆଧୋଟି ଗ୍ରାମ ବା୨୪ ଏ ପ୍ରତାପଦେବ ରାଜାକଂ ରାଜ୍ୟେ ହରଣ । ***ପୁରୁତୁଆଇ*** ବିସେ ୧୮ ରାଜଦତ **ଏହାକଂ ପାଟ ମହାଦେବି ପଦ୍ମାଦେଈ ପାଟ ମହାଦେବିକଂର** ସୁଆଜଳା ଗ୍ରାମରେ ତୋଟା ଗୋ୧୮ । ଏ ଗ୍ରାମରୁ ଏ ତୋଟାକୁ ଭୂମି ବା୧୨ । ଏ ସାସନ ମାହାଜନ ତହୁଁ ହରଣ କରିଦେଲା ବା୧।୫ । ଗାଏ ପଦ ୨୮ ବା୧୩।୫ । **ଏ ରାଜାକଂ ଅଲମାରାଣି ଭୋଗକୁ** ଦ୍ରିଜେପୁର ବିଂଧା ବା୬ ଗାଏ ପଦ ୨୮ ବିଂଧା ୨୮ ଭୂମି ବା୧୯।୫ । ***କାଟେ*** ବିସେ ଏ ମାହାରାଜାକଂ ପୁଅ ପୁରୁଷୋତ୍ତମ ଦୋଓ ଜେନାକଂର ଦତ କୁଅଁର କାଳି ସିତଳ ଭୋଗକୁ ଛତିଅନା ଗ୍ରାମ ବା୫୩ ***ଦେଗାଂ*** ବିସେ ୧୮ ଏହାକଂର ଦତ କୁସରଦା ଗ୍ରାମର ଭୂମି ବା୨୧।୪। ***ସାଇଲୋ*** ବିସେ ୧୮ ନଗରି ଗ୍ରାମର ବା୨୪।୧୫ । ଗଙ୍ଗାସର ବିଂଧା ବା୧୨ ଗାଏ ଦେସ ୧ ବିଂଧା ୧୮ ଭୂମି ବା୩୬।୧୫ । ମହାସୁଗନ୍ଧି ତଇଳ ଭିଆଣକୁ କୋଣ୍ଡୋ ଗ୍ରାମ ବା୧୭।୫। ଗାଏ ପଦ ୨୮ ଦେଶବିଂଧା... ...୫୪ **ଏହାକଂ ପୁଅ ପୁରୁଷୋତ୍ତମଦେଓ ଜେନାକଂର** କୁଅଁର କାଳୀ ସିତଳ ଭୋଗକୁ ପୁରୁଣ ଗ୍ରାମ ବା୨୩।୧୦। ଗାଏ ଦେସଗ୍ରାମ ବିଂଧା ଗୋ୪୮ବା ୭୭।୧୦। ***ମରଢ଼*** ବିସେ ୧୮ ରଜାଙ୍କ ଦତର ଦତ୍ତ ନୂଆଗ୍ରାମ ବା୨୬ ।

ମାହାସୁଗନ୍ଧି ତଇଳ ଭିଆଣକୁ ପଡ଼ିଆ ହାଟ ୧୮ କଉଡ଼ି କା୧୦୦ ଏ ରଜାକଂ ମାଏ **ରପ[82a]ଦେଈ ଅମାଜିଆକଂ ଭୋଗକୁ** କୁଳିକଇଜ ଗ୍ରାମ ବା୪୦। **ମୁକୁନ୍ଦଦେବ ରାଜା ଏ ପ୍ରତିବଧେ ଦେଲେ** କୋଠଦେଶ ଦଣ୍ଡପାଟେ ବେଢ଼ାଲୋ ଅରିଲୋ ଗ୍ରାମର ବା୨୮।୫ ଗୋପାଳପ୍ରିଅ ତୋଟା ଛିତିକାରକୁ ସିଘଂମାପୁର ନିଗିଧାରୁ ବା୪ କଳିଜୋପାନ ଆଠାରୁଂ ନିତିଆନି ବିଡ଼ିଆ ଲାଗିକି ୧୮ ପାନ ସଇକାମତେ ନଉସଇ କା୯୦ଢ ଏ ପାନ ଶ୍ରୀପୁରୁଷୋତ୍ତମ ବହି ଆଣିମା ଭଡ଼ାକୁ ଏ ପାନଘରେ ପାନ ବାଛିବାକୁ ମଧକରି ସାଠିଏ ସଇକା ୬୦ ଜାଇଂ ନିକର ପାକଲା ପାନ ଖଟିବ ତିରିସି ସଇକା ୩୦ ଲେ. ବରସ ୧୮ ଦି୩୬୫୮ ପାନ ସଇକା ୧୦୯୫୦। ଶ୍ରୀଜଗନ୍ନାଥବଲଭ ଭୋଗରେ ମୁଣୋହି ହୋଇବ ଛ ସଇକା ୬ ଲେ. ବରସ ୧୮ ସଇକା ୨୧୯୦ ଗାଏ ପଦ ୨୮ ସଇକା ୧୩୧୪୦ ଗାଏ ଦେସଗ୍ରାମ ନିଗିଧା ୧

ପାନଭୂମି ବା୬୧।୫। ପାନ ସଇକା ୧୩୧୪୦ । ***ପୁବଦିଗ ଦଣ୍ଡପାଟେ*** ବିସେ ପଂଚୁସର ଗ୍ରାମ ୧୦ ବା୫୬ ବାଲିସିପୁର ଗ୍ରାମ ବା୧୩।୧୦। ଛିତିକାରକୁ ଲକ୍ଷ ଛାଇ ଲକ୍ଷ ତୁଳସି ତେଟାକୁ ଧୂସାର ମାଳ ଅବଦାନ ଭୂମି ବା...୦ ତିରଣ ଉଦେକ କା୨୦୦ ଗାଏ ଦେସ ଗ୍ରାମ ୨ ଅବଦାନ୧୦ ଭୂମି ବା୬୯।୧୦ । ଅବଦାନ କଉଡ଼ି କା୨୦୦

ଏ ରଜାଙ୍କ **ମାଏ ଉପଦେଈ ଅମାଜିଆଙ୍କ** ଭୋଗକୁ ୧ ***କୁସୁମାଳ*** ବିସେ ଆରିଆ ଗ୍ରାମ ୧୦ ବା୩୪ ନରୁଆ ଗ୍ରାମର ବା୩୨ ଗାଏ ଦେସଗ୍ରାମ ୨ରେ ବା୬୬ । ***ସରସତି*** ବିସେ ସନପୁର ଗ୍ରାମ ବା୨୭ । ***ବାଲି*** ବିସେ ଗଜପୁର **[82b]** ଗ୍ରାମ ବା୫୪ । **ଏ ମାହାରାଜାଙ୍କ ରାଣି ଏଲମାଦେଈ ରାଣିଙ୍କ** ଭୋଗକୁ ଏ ଅଇରି ଗ୍ରାମ ୧୦ ରହଣି ଭୁଇଂ ବା୨୨ ଗାଏ ଦେସଗ୍ରାମ ୨୦ ବା୭୬ ଏଲମାଦେଈ ରାଣିଙ୍କ ଭୋଗକୁ ***କୁସୁମମଣ୍ଡଳ*** ବିସେ କେରେ କେରେ ବିଂଧା ବା୧୩ । ***ଏବାର*** ବିସେଅରେ **ଉପଦେଈ ଅମାଜିଆଙ୍କ** ଭୋଗକୁ ତିଲୋଚନ ବିଂଧା ୧୦ ବା... ଗାଏ ପୁବଦିଗ ଦଣ୍ଡପାଟେ ଏ ରଜାଙ୍କ ପୋ **ପୁରୁଷୋତ୍ତମ ଦୋଓ କେନାଙ୍କ** ଭୋଗକୁ କୁଅର କାଳି ସିତଳକୁ ଜଳଗୋଈ ବିଂଧା ବା୫ ଗାଏ ପୁବଦିଗ ଦଣ୍ଡପାଟେ ଦେସଗ୍ରାମ ୮ ବିଧା ୨ ଅବଦାନ ୧୦ ବା୨୫୨।୧୦। କଉଡ଼ି କା୨୦୦ । ଏ **ପଛିମଦିଗ** ଦଣ୍ଡପାଟେ... । ଏ ମାହାରାଜାଙ୍କର ଦତ ସୁଆରଦୋଳା ପେଣ୍ଡ ୧୦ ଭୁଇଂ ବା୬୯ ଏ କ୍ଷେତ୍ର ସୁନା କଉଡ଼ି କା୫୦୦ ବାରଦା ପେଣ୍ଡ ୧୦ ଭୁଇଂ ବା୨୫ । ଏ ଅବଦାନ କା୧୫୦ ଗାଏ ମଢ଼ିଆଳ ପେଣ୍ଡ୨୦ ଭୂମି ବା୯୪ । କଉଡ଼ି କା୬୫୦ **[83a]**

## I.D. [ସେବକ ଭିଆଣ ଓ ସେବା ବିବରଣ]

### I.D.1 [ସେବକ ଭିଆଣ]

**[83b] ଶ୍ରୀପୁରୁଷୋତ୍ତମ ଶ୍ରୀଜଗନ୍ନାଥଦେବଙ୍କ ଦେଉଳ ୧୦** ପରମେଶ୍ୱରଙ୍କ ନିତ୍ୟ କୃତ୍ୟ ସେବାକୁ ସେବକ ଭିଆଣ ଯୋଗେଂ । ମାହାରାଜାଙ୍କର ପରମେଶ୍ୱରଙ୍କ ଦରସନରେ ଛରାପଏରା ଆଙ୍ଗୁଂଳି କର୍ପୁର ଆଳତି ମଧ କରି ଉପଚାର ସେବା ୧ ପରମେଶ୍ୱରଙ୍କ ପୁଜାବିଧି ହୋମ ବିଧି ପଛିନ କରି କହିବାକୁ ରାଏଗୁରୁ ମାହାପାତ୍ର ସେବାକୁ ଜ୧ କର୍ପୁର ଚନ୍ଦନ ରୋସୋ ଅକଂଚାନଡ଼ ପ ନାନା ପଦାର୍ଥ ମାନ ତଲପ କରି ଘେନିମାକୁ ତଣ ସେବାକୁ ପୁରୋହିତ ମାହାପାତ୍ର ଜ୧ ରୋସୋ ଭୋଗ ଭଲ ମନ୍ଦ ବୁଝି ଚରଚିବାକୁ ପହରାଜ ମାହାପାତ୍ର ଜ୧ । ପରବ ଯାତ୍ରାମାନ ଦିନ ନିର୍ନୟ କରି ଦେଉଳକୁ ତିଥି ପାଜିଂ ଦେବ ପାଟଯୋସି ମାହାପାତ୍ର ସେବାକୁ ଏ ଜ୧ ପଣ୍ଡା ପଶୁପାଳକମାନଙ୍କୁ ସ୍ନାନ ସନ୍ଧ୍ୟା ପଚାରିବ ପଣ୍ଡାମନକୁଂ ପୁଜା ବିଧିମାନ ପଚାରିବ ସେବାକୁ ବଡ଼ପଣ୍ଡା ମାହାପାତ୍ର ଜ୧ । ଦ୍ୱାଦଶ ଯାତ୍ରା ମୁଖ୍ୟ କରି ନାନା ପରବ ଯାତ୍ରାମାନ ଆଚାର୍ଯ୍ୟ ସେବାକୁ ଏ ଦେଉଳ ପ୍ରତିଷ୍ଠା କଲା ନିମନ୍ତେ ରଥ ବଂସକୁ ସେବା ଦେଲା

ପୁରିରଥ ଆଚାର୍ଯ୍ୟ ଜ୧ ପର୍ବଯାତ୍ରାମାନର ହୋମରେ ବ୍ରହ୍ମାସେବାକୁ ଚକ୍ରଧରବ୍ରହ୍ମା ଜ୧ ରଜାକଂ ପ୍ରତିନିଧି ପଣେ ମୁଦ୍ରସ୍ତ ମଠ ୨୮ ଶ୍ରୀବିଷ୍ଣୁସ୍ୱାମୀ ମୁଦ୍ରସ୍ତ ୧ ଅଗ୍ନିଶର୍ମା ମୁଦ୍ରସ୍ତ ଜ୧ ଗାଏ ଜ୨ ।

**[84a]** ଦଇତାପତି ସେବକ ନାଏକ ଜ୨ଝ ଦଇତାମାନ ବାଡ଼ରେ ଜ୧ ପତିମାନ ବାଡ଼ରେ ଜ୧ ଗାଏ ଜ୨ । ପାଣିଛଡ଼ା ପଣ୍ଡା ଜ୧୩ ସିଂଘାରି ପଶୁପାଳକ ଜ୧୨ ଛାମୁଖୁଣ୍ଟିଆ ଜ୬ ଶ୍ରୀମୁଖ ସିଘାଂରି ଜ୩ ଚାଙ୍ଗଡ଼ା ମେଇକାପ ଜ୪ ଭିତର ଭଣ୍ଡାର ମେଇକାପ ଜ୮ ଅଖଣ୍ଡ ମେଇକାପ ଜ୪ ସେଜଘର ମେଇକାପ ଜ୬ ସୁଆରବଡୁ ଜ୪ ପତ୍ରିବଡୁ ଜ୪ ଭିତର ଗରେଆବଡୁ ଜ୪ ବାହାର ଗରେଆବଡୁ ଜ୬ । ହଡ଼ପ ନାଏକ ଜ୬ ବିଡ଼ିଆ କୋଗାଣିଆ ଜ୬ ପାନମ ଯୋଗଣିଆ ଜ୨ ଶୁଦୁସୁଆର ଜ୩ ଚନ୍ଦନ ଘସା କରଟିଆ ମୁଦୁଲି ବ୍ରାହ୍ମଣ ସେବକ ଜ୮ ସୁଗନ୍ଧ ଘଟୁଆରି ଜ୪ ରୋସ ଭାତରନ୍ଧା ଛତିସି ନିଯୋଗ ଜ୩୬ଝ ବଇଠା ପାଣିଆ ଜ୧୨ ଝୋଲାଲଗାଇ କାଠପେଲା ଜ୪ ଚାଉଳଧୂଆ ଜ୪ ହାଣ୍ଡିମାନ ବସାଇ ଚାଉଳ ଭରା ଜ୪ କାଠଚଟୁ ଘେନି ଚଲାଣିଆ ଜ୪ ଗାଳଣିଆ ଜ୪ ଭାତ ଓଲାଣିଆ ଜ୪ ଗାଏ ଜ୩୬୮ ନାଏକ ସେବକ ଜ୩୬ ମହାସୁଆର ଜ୨ ପିଠାସୁଆର ସାରେଆ ପିଠା ସୁଆର ଜ୧୦ ବଗଡ଼ା ପିଠା ସୁଆର ଜ୧୦ ଗାଏ ଜ୨୦ । ଖିରି ସୁଆର ଜ୬ ତୁଉଣ ସୁଆର ଜ୬ ପଣାସୁଆର ଜ୪ ପାଚେଲିଆ ସୁଆର ଜ୪ ତୋଳାବଡୁ ଜ୮ ତଳିବଡୁ ଜ୬ ପନ୍ତିବଡୁ ଜ୧୨ ଭିତର ବଢା ଜ୪ ମୁଣୋହି ଠାରେ ମୁରଜ ଦିଆ ସେବକ ଜ୨ ଘିଅ ପରସା ଜ୨ ବ୍ରାହ୍ମଣ ସମସ୍ତ ଆଦି **[84b]** ସରଘର ମେଇକାପ ଜ୪ ଭୋଗ କୁଆଅଡ଼ା ସେବକ ଜ୧ ରାତିରେ ଭୋଗ ଆସିବା ସଗଂତେ ତୋଳାବତି ସେବକ ଜ୨ ରୋସ ଦୁଆର ଜଗିଆ ବ୍ରାହ୍ମଣ ପାଇକ ଜ୨ ସରଘର ଜଗିଆ ଶୁଦ୍ର ପାଇକ ଜ୨ ରୋଷ ଅଗାଂରିଆ ସେବକ ଜ୨ ଧୋପଖାଳିଆ ସେବକ ଜ୨ ପାଆଡ଼ ଘର ମେଇକାପ ଜ୨ ବାହାର ଭଣ୍ଡାର ମେଇକାପ ଜ୨ ଦୁଆର ନାଏର୍କ ଜ୨ ଛତାସେବକ ଜ୫ ଅୟାମାହାଜନ ଜ୬ ଫାରକଦଳ ଜ୧୨ ସିଘଦ୍ୱାର ଦକ୍ଷିଣ ଦ୍ୱାର ଜଗିଆ ପଢ଼ିଆରି ନାଏକ ଜ୧ ମଧକରି ଜ୨୬ ପରବ ଯାତ୍ରା ପଢ଼ିଆରି ଜ୨ ଅସ୍ତାନ ପଢ଼ିଆରି ଜ୨ ବୃନ୍ଦାବନ ମଣ୍ଡଣି ନାଏକ ଜ୨ ମଣ୍ଡଣି ଖୁଣ୍ଟିଆ ସେବକ ଜ୨ ଧ୍ୱଜ ଧରା ସେବକ ଜ୩ ତରାସ ସେବକ ଜ୧ ଉପଚାର ଚଅଂର ସେବକ ଜ୩ ରନ୍ ଆଲଟ ସେବକ ଜ୩ ସୁନାବେତ ସେବକ ଜ୩ ଖଦି ବିଂଚା ସେବକ ଜ୨ ସୁନା ଦିଉଡି ସେବକ ଜ୨ । ପ୍ରତାପଦେବ ରାଜାକଂ ରାଯ୍ୟେ ଅଧିକ ମହାସୁଗନ୍ଧି ଦିଉଡ଼ି ସେବକ ଜ୧ ଦରପଣିଆ ସେବକ ଜ୩ ଭୋଗମୁଣୋହି ପୁରାଣପଣ୍ଡା ଜ୩ ବଡ଼ରାଏ **ନୃସିଂହଦେବ** ରଜାକଂ ରାଯ୍ୟେ ଭିଆଣ ଜୟମଙ୍ଗଳ ଆଳତି ଦେଲାକୁ ଏ ସେବାକୁ ସେବକ ଜ୨ ।

ପ୍ରସାଦ ବଡୁ ସେବକ ଜ୮ ଫୁଲବଡୁ ଜ୬ ବିମାନବଡୁ ଜ୪ । ହାନ୍ଦୋ**[85a]**ଳାବଡୁ ଜ୪ ପାହାନ୍ତି କପାଟ ଫେଡ଼ା ସେବକ ଜ୨ ଦଏଣା ମାଳି

ଗୋଛାଇତ ଢ୨ ସୁନା ରପା କଂସା ତମ୍ବା ମଜା ସେବକ ଢ୨ ଖଟଣି ସେବକ ମାନର ରୋସୋ ସୁଆରମାନ ମଧ କରି ଗୋଡ଼ଣିଆକୁ ପାଣିବୁହା ସେବକ ଢ୨ ରନ୍‌କମ ବିଦାଣି ଢ୨ ସୁନାରପା କମ ମାଠ ବିଦାଣି ଢ୨ ରଥ ଉପରେ ଲାଗି ହୋଇବାକୁ ସୋଲ ଚିତା ବିଦାଣି ଢ୨ ସୁନାରୁପା ତୁଳମୁଲ କରିବାକୁ ଚିନରା ସେବକ ଢ୨ ସିପଟି ମାହାରଣା ଢ୩ ଘଣ୍ଟୁଆ ସେବକ ଢ୮ ବିରକାହାଳିଆ ସେବକ ଢ୨ ପାହାନ୍ତି ପାଣି ସଂଖୁଆ ସେବକ ଢ୨ ଧୁପଶଙ୍ଖ ମହୁରିଆ ସେବକ ଢ୪ ମାଦେଳି ଢ୨ ମୃଦଙ୍ଗ ସେବକ ଢ୨ ଢୋଡ଼ାକାହାଳିଆ ଢ୨... ଆ ଢ୨ ବାଇଁସିକାର ସେବକ ଢ୨ ଚଉସଠି ସଂବରଦା ଢ୬୪୮ ନାଚୁଣି ଢ୨୦ ଗାଏଣି ଜ୧୦ ଭିତର ଗାଏଣି ଢ୬ ତାଳମାରି ଜ୪ ଯନ୍ତଧାରି ଢ୪ ରବାବି ଢ୨ ଚଅରଧାରି ଢ୮ ଆଲଟ ଧାରି ଢ୪ ସୁନା ରପା ବେତ୍‌ଧାରି ଜ୬ ପରିଖଧାରି ଢ୨ ଗାଏ ସଂବରଦା ଢ୬୪ ମିନ ନାଏକ ଜ୨ ।

## I.D.2 [ପରମେଶ୍ୱରଙ୍କ ସେବକମାନଙ୍କ ସେବା]

**[90a]ମୁଦ୍ରହସ୍ତ ସେବା ଢ୨୮** ଅଗିଶର୍ମା ମୁଦ୍ରହସ୍ତ ଢ୧ ବିଷ୍ଣୁଶର୍ମା ମୁଦ୍ରହସ୍ତ ଢ୧ ଗାଏ ଢ୨ । ପରମେଶ୍ୱରକଂ ସେବକମାନକଂର ସେବା ଭିଆଣ ୧ *ମୁଦ୍ରହସ୍ତ ସେବା ଢ୨୮* ଏ ରଜାର ପ୍ରତିନିଧି ହୋଇଂ ସେବା କରିବ । ଶ୍ରୀବଳରାମଦେବକଂ ବାଡ଼େ ଅଗ୍ନିଶର୍ମା ମୁଦ୍ରହସ୍ତ ଢଣେ ୧ ଶ୍ରୀଜଗନ୍ନାଥଦେବକଂ ବାଡ଼େ ବିଷ୍ଣୁଶର୍ମା ମୁଦ୍ରହସ୍ତ ଢଣେ ୧ ଗାଏ ମୁଦଲସ୍ତ ଜ୨୮ ଏହାର ଏ ବ୍ରତ ହୋଇଲା ଦିନରୁ ବାର ବରଷ ପରିଜନ୍ତେ ବ୍ରହ୍ମଚର୍ଯ ହୋଇଂ ପରମେଶ୍ୱରକୁଂ ସେବା କରିବ, ଏହା ମଠରେ ଯୁବା ସ୍ତି ମାନକଂ ମୁଖ ନ ଚାହିଁବ । ସନ୍ୟାସିମାନକଂ ଠାରଂ ପୁଜାବିଧିମାନ ଯାତ୍ରାମାନର ପ୍ରାର୍ଥନା ବାକ୍ୟମାନ ସିଖିବ । ଯାତ୍ରାମାନରେ ଭୋଗମୁଣୋହି ନୋହୁଂ ଆଗରାଣି ପ୍ରସାଦ ପଟନି ଖଦି ଦଅଣା ଧଣ୍ଡି ଚତୁସମ ଲାଗି କରାଇବ । ଯାତ୍ରାମାନରେ ଜେ ଜାହା ବାଡ଼ରେ ସର୍ବାଙ୍ଗକୁ ସଂସ୍କାର କରିଂ ଆଗ ଶ୍ରୀଅଙ୍ଗେ ଲାଗି କରାଇବ । ବସ୍ତ୍ର ମାଳ ମୁଚୂଳ ସବୁ ସଂସ୍କାର କରିଦେବ, ପଶୁପାଳକ ଲାଗି କରାଇବ । ଏ ଉତାରେ ରାଜ ପ୍ରସାଦ ପଟନି ଗଦି ଦଅଣା ଧଣ୍ଡି ଚତୁସମ ଲାଗି କରାଇବ । ଯାତ୍ରା ଭୋଗ ମୁଣୋହି ସଂପୂର୍ଣ୍ଣେ କର୍ପୁର ଆଳତି ଦୁର୍ବାକ୍ଷତ ସାତବତି ସଂଜକାଳି ବନ୍ଦାପନା କରିବ । ଏ ଉତାରେ ପ୍ରସାଦ ଉଲାଗି କରି ସୁବର୍ଣ୍ଣ ପାତ୍ର ଗୋଟିକେ ପୁରାଇ ଆଣି ରାଜାକଂ ବିଜେ କରିଥିଲେ ପୁରୋହିତ ହାଥେ ଦେବ, ରଜାକଂ ବିଜେ କରି ନ ଥିଲେ ପରିକ୍ଷା ହାଥେ ଦେବ । ଦେବସ୍ନାନ ଯାତ୍ରା ଚନ୍ଦନ ଯା**[90b]**ତ୍ରା ନିମନ୍ତେ ଜ୍ୟେଷ୍ଟ ଶୁକ୍ଳ ତ୍ରୟୋଦସି ଦିନ ଦେଉଳ ଉତର ଦ୍ୱାର ଭୋଗବତି କୁଅ ପଙ୍କ ଉଧାରଣ କରି ସଂସ୍କାର କରିବ । ଏ ଚତୁର୍ଦ୍ଦଶି ଦିନ ରାତ୍ରେ ସ୍ନାନଜଳ ଅଧିବାସ ହୋଇବାକୁ ଏ କୁଅର ଜଳ ବହିଆଣି ଅଦିବାସ ଘରେ ଚନ୍ଦନ ମିଶ୍ରିତ କରି ସୁନା ଗରିଆମାନରେ ସଂସ୍କାର କରି ବସ୍ତ୍ର ଘୋଡ଼ାଇ ଥୋଇବ । ଦେବସ୍ନାନ ଯାତ୍ରା ଶ୍ରୀଗୁଣ୍ଡିଚା ଯାତ୍ରା ଦୁଇ ବିଜୟରେ ପହଣ୍ଡବିଜେ ବେଳେ ଅଣ୍ଟା ପାଟ ଡ଼ୋରୁଅ ଧରି ବିଜେ କରାଇବ ।

ଯାତ୍ରାମାନରେ ଜଉଂ ଯାତ୍ରାର ଜଉଂ ପ୍ରାର୍ଥନା ବାକ୍ୟ ତାହା ପଢ଼ି ଯାତ୍ରା କରିବ । ଯାତ୍ରାମାନରେ ରାଜାଏ ବିଜେ କରି ନ ଥିଲେ ଏ ପ୍ରତିନିଧି ପଣେ ଆଚାର୍ଯ ବ୍ରହ୍ମାଙ୍କୁ ବରଣ କରି ଉପଚାରମାନ କରିବ । ରଜାକଂ ପ୍ରତିନିଧି ନିମିତେଂ ଏ ମୁଦଲହସ୍ତ ହୋଇଥିବା ଜାଏ ପରିକ୍ଷା ସଗଂତେ ବେହୋରଣରେ ବସିବ, ସ୍ୱଦେସି ପ୍ରଦେସି ଯାତ୍ରିମାନକୁଂ ଏହା ମଠରେ ଭାତଛତ୍ର ଦେବ । ଏ ସିଘାଂସନ ଉପରେ ଉଠିବାକୁ ଏହା ମଥାରେ ଲୁଗାବେଲୁଲି ଗୋଟିଏ ବାଧିଂଥିବ । ଏଥିକି ଭଣ୍ଡାରୁ ଲୁଗା ପାଇବ । ଜେତେ ଯାତ୍ରାରେ ରାଜପ୍ରସାଦ ଗଦି ଲାଗିକରାଇବ ତେତେ ଯାତ୍ରାରେ ଚାଙ୍ଗଡ଼ା ଗନ୍ତାବାହୁଡ଼ା ଲୁଗାର ହୋଉ କି ଭଣ୍ଡାରଂ ହୋଉ ଦୁଇ ମୂର୍ତ୍ତି ସାଢ଼ି ପାଇବ । ରଥମାନଙ୍କ ସେବାକୁ ୧ ଆତ୍ରେୟ ଗୋତ୍ରରେ ରଥ ବଂସରେ ସେବା ହେଲା ୧ ଏ ପ୍ରାସାଦ ପୁରି ରଥ ଆଚାର୍ଯ **[91a]** ପ୍ରତିଷ୍ଠା କଲା ନିମନ୍ତେ ଏହାକୁ ସେବା ଦେଲା ଏ କ୍ଷେତ୍ରରେ ଦେଉଳ ପ୍ରତିଷ୍ଠାମାନ କରିବ, ଦ୍ୱାଦଶ ଯାତ୍ରାରେ ଆଚାର୍ଯ ହୋଇବ ।।୦।।

**ରଥମାନକଂ ସେବାକୁ ୨ ଦଇତାପତି ସେବାକୁ ୧** । ***ଦେଇତା ପଶୁପାଳକ ସେବା ୧୮*** ନୀଳମାଧବ ଅବତାରେ ବିସ୍ୱାବସୁ ଶବର ସେବା କରାଥିଲାକୁ ଏ ଦାରବ୍ରହ୍ମ ଅବତାରେ ଏହା ସେବାରେ ସେବା କରଇ ଶୁ... ସେବାଏ ୧ ଏ ନୀଳମାଧବ ମୂର୍ତ୍ତି ଦେଖିଜାଇଂ ଇନ୍ଦ୍ରଦ୍ୟୁମ୍ନ ମାହାରାଜାକୁଂ ବିଦ୍ୟାପତି ବ୍ରାହ୍ମଣ କହିଲାକୁ ରଜା ଏ ବିଦ୍ୟାପତିକି ସେବା କଲାକୁ ଏ ବିଦ୍ୟାପତି ବ୍ରାହ୍ମଣ ସେବାରେ ସେବା କରଇ ***ପତି ବ୍ରାହ୍ମଣ ସେବା ଏ ୧*** । ଗାଏ ଦେଇତାପତି ସେବା କରଇ ଦୁଇ ସେବା ୨୮ ଏ ଦୁଇ ସେବାରେ ... ... ଏହା ସେବାରେ ଦୁଇ ଆଡ଼ରେ ବୟସରେ ଜେ ବଡ଼ ସେ ନାଏକ ହୋଇ, ଏ ଦୁଇ ଆଡ଼ର ଜେ ଜାହାର ପୋ ଭାଇ ଘେନି ସେବା ଖଟଇ, ଏ ଚତୁର୍ଦ୍ଧା ମୂର୍ତ୍ତିରି ତ୍ରିମୁଣ୍ଡିଠାରଂ ଶ୍ରୀପୟର ସରିକି ବାମ ଭୁଜ ଆଡ଼ ଦେଇତା ସେବା କରଇ, ତ୍ରିମୁଣ୍ଡିଠାରଂ ଶ୍ରୀପୟର ସରିକି ଦକ୍ଷିଣ ଭୁଜଆଡ଼ର ... ପତି ସେବା କରଇ । ପରମେଶ୍ୱରଙ୍କ ଶ୍ରୀଅଙ୍ଗମାନ ବଇସମ ହୋଇଲେ ରାଜ ଆଜ୍ଞା ପ୍ରମାଣେ କାଳ ଶୁଧେ ଭଟମିଶ୍ରକୁଂ ଘେନି ବନକୁ ଜାଇଂ ବନଯାଗବିଧି କରି ବିଶ୍ୱକର୍ମା ବଢ଼ଇ ହାଥରେ ଲିମ୍ବଦାରୁ ବୃକ୍ଷ ଛେଦନ କରାଇଂ ବସ୍ତ୍ର ଆଛାଦିତ କରାଇ ଶଗଡ଼ିରି କରି ଘେନି ଆସିବ, ଦେଉଳ ଉତର ଦିଗରେ କର୍ମକୁଟୀଗୃହ **[91b]** କରାଇଂ ଏଠାରେ ଦାର ପ୍ରତିମା ସ୍ୱରପ କରି ବଢ଼ଇ ହାଥରେ ନିର୍ମାଣ କରାଇ ଅଣସର ତାଟି ଭିତରେ ବିଜେ କରାଇ ପନ୍ଦର ଦିନ ଭିତରେ ସପ୍ତାବରଣ ଲାଗି କରାଇବ । ଦୋଯେଷ୍ଠୀ ପଡ଼ିଲେ ଅଣସର ଦେଢ଼ମାସ ନୋହିଲେ ଆନ ବରସମାନ ଅଣସର ପଟୀ ଦେବସ୍ନାନ ଯାତ୍ରା ସେନ୍ୟାଲାଗିଠାରଂ ବାହୁଡ଼ା ଗୁଣ୍ଡିଚା ସିଘାଂସନ ଏହାକୁ ଥୁଡକ ମୂର୍ତ୍ତି କନ ଲାଗଇ ଦେବସ୍ନାନ ଯାତ୍ରା ଶ୍ରୀଗୁଣ୍ଡିଚା ଯାତ୍ରା ବିଜେକୁ ସେନ୍ୟା ଲାଗି କରାଇବା ନିମନ୍ତେ ଫାରକ ଲେକାଂ ଗୁହାରିଆ ହାଟ ଭାଟ ଦିଉଡ଼ିଆ ଜାଇଂ ଏହା ଘରଠାରଂ ହକରା କରି ଆଣିମ ଏ ଆସି ପରିକ୍ଷାକୁ ଭେଟି ସଭାଚନ୍ଦନ ପାଇଂ ଗୋଡ଼ ଧୋଇଂ ସେନ୍ୟା ଲାଗିକରାଇ ଏହାର

ପୋ ଭାଇ ବିଜେ କରାଇବ । ଶ୍ରୀଅଙ୍ଗକୁ ଶ୍ରମ ନୋହିବ ସୁପାତି ଉପରେ ଥୀର ଥୀର କରି ବିଜେ କରାଇବ । ଦେବସ୍ନାନଯାତ୍ରା ଦକ୍ଷିଣ ମୂର୍ତ୍ତି ବନ୍ଦାପନା ପତି କରିବ, ରଥ ଉପରକୁ ଗୁଣ୍ଡିଚା ନବରକୁ ବିଜେ କରାଇବା ବେଳକୁ ଦୁର୍ବାକ୍ଷତ ବନ୍ଦାପନା ପତି କରିବ । ଦ୍ୱାଦଶ ଯାତ୍ରାରେ ଶ୍ରୀସୁଭଦ୍ରାଦେବିକଂ ଆଡ଼ରେ ଦୁର୍ବାକ୍ଷତ ବନ୍ଦାପନା କରିବ । ଶ୍ରାବଣ ମାସରେ ଶୁଭଯୋଗ ଦିବସରେ ୩ ଦେ ବକୁଂ ଅଗାଂଭରଣ ତଢ଼ାଉ ମୃ...ତୀ ଲାଗି କରାଇବ । ଶ୍ରାବଣ ଶୁକ୍ଳ ଗହ୍ଣା ପଉର୍ଣମି ଦିନ ସକାଳଧୂପ ବଢ଼ିଲା ଉତାରେ ବଳଭଦ୍ର ଜନ୍ମ ଯାତ୍ରା ନିମନ୍ତେ ସୁଦରସନ ଦେବକୁଂ ଚଉଦୋଳି ବିଜେ କରାଇଂ ମାରକଣ୍ଡେଶ୍ୱର ଦେବଙ୍କ ଠାକୁ ନେମ । ଏ ଦିନ ମ... **[92a]** ଯାତ୍ରା ନିମନ୍ତେ ଏ ସୁଦର୍ଶନଦେବକୁଂ ଚୁଳ ମୁକୁଟ ଲାଗି କରାଇଂ ଚଉଦୋଳେ ବିଜେ କରାଇଂ ଦୋଳ ମୋଣ୍ଡୋଇ ସାହି ଗହ୍ଣା ବଟ ଠାକୁ ବିଜେ କରାଇବ । ଶ୍ରୀଅଙ୍ଗରେ ଚନ୍ଦନ ଅଧିକ ହୋଇଲେ ପାଟ ଡ଼ୋରେ ଏ ପଇତା ଜାଲି ଲାଗିରୁ ବଘାମୁଁହା ପାଟ ଡ଼ୋରଅ ଲାଲାଟ ପାଟିରଂ ଫେଡ଼ିବ ଅଙ୍ଗାଭରଣ ତଢ଼ାଉ ବଇସମ ହୋଇଥିଲେ ଏ ଦଇତାପତି ଦେବ । ଏହାର ଜଉଂ ପୋ ଜନ୍ମ ହୋଇ ସାତଦିନ ହି ହୋଇଥିବ, ସେଠାରଂ ମଧକରି ସବିହେ ଲେପହୋଇ ଅଣସର ଯାତ୍ରାରେ ଡ଼ୋର ଚନ୍ଦନ ଦୁଆଦଶି ଦିନର ତାଟି ଭିତର ରାଜପ୍ରାସାଦକୁ ଶ୍ରୀଭୁଜମୁଠି ଚନ୍ଦନ ଦୁଇ ଦେବକଂର ଗୋସାଣି ଖୋସା ଚନ୍ଦନ ଡ଼ୋରୋ ଶ୍ରୀକାପଡ଼ା ଏହା ଆଣି ତାଟି ଦୁଆର ପରିକ୍ଷା ବେହରଣ ଦେବ । ଏ ଉତାରେ ପରିକ୍ଷା ପରକରଣ ସମସ୍ତହି ପ୍ରସାଦ ଚନ୍ଦନ ଦେବ । ସବୁ ଡ଼ୋରୋ ଚନ୍ଦନ ଶ୍ରୀକାପଡ଼ା ବାହାର କରିଦେବ, ଶ୍ରୀଅଙ୍ଗ ଆଡ଼ତି ମଡ଼ିଆଳ ଲାଗି ସାରି ଏ ସାନ ବଡ଼ ସବିଏ ଗନ୍ତା ବାହୁଡ଼ା ଲୁଗା ଦୁଇ ଦୁଇ ଖଣ୍ଡ ଜଣେ ସାଢ଼ି ପାଇବ, ତାଟି ଭିତରୁ ଶ୍ରୀଅଙ୍ଗେ ଅଟକାଳି ଲାଗିକି ଓରେଆ ଧାନ ଭରଣେ ପାଇବ ପିଠା ଗୋଟିକା କଉଡ଼ି କା୫୦ଣ ବହି କଉଡ଼ି କା୨୦୦ ଗାଏ ପଦ ୨୮କା୨୫୦ ପାଇବ । ଅଣସର ଯାତ୍ରା ଦଶମି ନେତପାଟ ଲାଗି ଦିନର ମଝି ପନ୍ତି ଭୋଗ ପାଇବ । ସ୍ନାନ ଯାତ୍ରା ସେହ୍ଣା ଲାଗି ଦିନ ଶ୍ରୀଗୁଣ୍ଡିଚା ଯାତ୍ରା ୯ ଦିନ ଜାକ ମଝି ପନ୍ତି ଭୋଗ ପାଇବ । ଅଣସରଯାତ୍ରା ତାଟି ଦୁଆର ଜେତେ ସିତଳ ଭୋଗ ଏହା ଏ ମୁଣୋହି କରାଇଂ ସବୁ ନେମ ମଡ଼ିଆଳ ଲାଗି ଦିନର ସଂଝଂଧୂପ ମଝି ପନ୍ତି ଭୋଗ ନେମ, ଶ୍ରୀଅଙ୍ଗ ଉଲାଗିରୁ ଡ଼ୋରୁଅ ଚନ୍ଦନ କରାଳ ଶ୍ରୀକାପଡ଼ା ଜେତେକ ଏଥୁଂ କୋଠକୁ ଦେଢ଼ଭାଗ ଘେନା ହୋଇବ, ଆଉ ଏ ଦେଇତାପତି ନେମ । ତାଟି ଭିତର ସସ୍ତ୍ର ଲାଗି ଲୁହା ଶସ୍ତମାନ ଏ ନେମ । ଶ୍ରୀଅଗଂରଂ ନେତପାଟ ଜେତେକ ବାହାର ହୋଇବ, ଏଥୁଁ ଦେଇତାପତି କିଛି ହି ନ ନେମ,ସବୁ ବି**[92b]**ୟ ସଗଂତେ ପାତାଳି ହୋଇବ । ଦେବସ୍ନାନ ଯାତ୍ରା ଶ୍ରୀଗୁଣ୍ଡିଚା ଯାତ୍ରା ବାହାର ବିଜେ ଭିତର ବିଜେ ଦୁଇ ଯାତ୍ରା ମଧକରି ଏ ତିନି ଯାତ୍ରା ସେହ୍ଣା ଲାଗିଠାରଂ ସିଂହାସନେ ବିଜେ ସରିକି ୧୦ ସେହ୍ଣା ଫିଟିବା ଯାଂଏ ରଥ ଉପରେ ମଧକରି ଜେତେ ପିଣ୍ଡିକା ପଡ଼ିବ ରାଜଦତର ଜଜମାନ ଦତର ମଧକରି ଏଥିର ରତନ ନେତପାଟ ପତନି ଚନ୍ଦନ ଚଅଂର ହାଥୀ ଘୋଡ଼ା ବାହାରେ ଆଉ ଜେତେ ପଦାର୍ଥ ସବୁ ଏ ନେମ ।।

**ପାଣିଛଡ଼ା ପଣ୍ଡା ସେବକ ସେବା ୧୮**

ଏ ପଣ୍ଡା ଜ୧୩୮ ଏଥୁଂ ଜଣେ ସମୁଦ୍ର ତିରେ ମାସେ ପରିଜନ୍ତେ ଜପ କରୁଥିବ । ଏ ଆର ମାସରେ ଆସି ପୁଜା କରିବ । ଏ ପ୍ରକାରେ ବାର ମାସରେ ୧୨ ପଣ୍ଡା ଜପ କରିବ । ଦିନର ପାଳି ପଣ୍ଡା ଜ୩ ସୁଦରସନ ପନ୍ତି ଜ୧ ଗାଏ ଦି୧୮ ଜ୪ ଲେଖାଏ ସେବା କରିବ । ଏ ପାହାନ୍ତି ଅବକାଶରେ ମୁଖ ପଖାଳ ପୁଜାଠାର ପୁଷ୍ପ ଆଳୁଂଳି ବିଜେ ପରିଜନ୍ତେ ଉପବାସ କରିଥିବ, ଏ ପ୍ରଥମ ଅରଣ ଉଦୟକୁ ସ୍ନାନ ସନ୍ଧ୍ୟା ସାରିଂ ଦେଉଳକୁ ଜାଇ ପାଦ ପ୍ରକ୍ଷାଳଣ କରି ଆଚମନ ସାରି ପାହାନ୍ତି ଶ୍ରୀମୁଖ ପଖାଳ ପୁଜା କରିବ । ଏ କେଉଣସି ଦିନ ଏ ପୁଜାପଣ୍ଡା ଖଟି ନ ପାରିଲାକୁ ସିଂଘାରି ପଶୁପାଳକମାନଙ୍କୁଂ ଏ ସେବା ଦେଲାକୁ ଏ ପଶୁପାଳକମାନେ ଖଟିଲେ । ଏ ତିନି ଧୁପରେ ସିଂଘାସନ ଉପରେ ପିଢ଼ା ମାଡ଼ିବସିଂ ଷୋଡ଼ଶୋପଚାର ରାଜୋପଚାର ବିଧିରେ ଦ୍ୱାଦଶାକ୍ଷର ମନ୍ତ୍ରେ ଶ୍ରୀବଳରାମ ଦେବକୁଂ ପୂଜା କରିବ । ମନ୍ତରାଜ ମନ୍ତ୍ରେ ଶ୍ରୀଜଗନାଥଦେବକୁଂ ପୁଜା କରିବ । ଭୁବନେଶ୍ୱରୀ ମନ୍ତ୍ରେ ଶ୍ରୀସୁଭଦ୍ରାଦେବିକଂ ପୁଜା ସୁଦରସନ ମନ୍ତ୍ରେ ସୁଦର୍ଶନଦେବକୁଂ ପୁଜା କରିବ । ଜେତେ ପରବ ଯାତ୍ରା ମାନରେ ଷୋଡ଼ଶୋପଚାର ବିଧିରେ ପୁଜା ହୋଇବ । ଏ ପୁଜା ହିଁ ସିଂଘାସନ ଉପରେ ବସିଂ ପୁଜା କରିବ । କାର୍ତ୍ତିକ ମାସ ବାଳଧୁପ **[93a]** ପୁଜା ସକାଳ ଧୁପ ପୁଜା ସଂଗତେ ସିଂଘାସନ ଉପରେ ବସି ପୁଜା କରିବ । ଆଉ ଜେତେ ଭୋଗମାନ ସିଂଘାର ଭୋଗମାନ ପଞ୍ଚଉପଚାର ପୁଜାରେ ମୁଣୋହି ହୋଇବ । ଏ ସବୁ ସିଂଘାସନ ତଳେ ବସି ପୁଜା କରିବ । ଓଢ଼ଣ ଜାତ୍ରା ଜେତେ ଦିନ ଯାଏ ଘୋଡ଼ ଲାଗି ହେଉଥିବେ ତେତେଦିନ ଧୁପ ପୁଜା ସିଂଘାସନ ତଳେ ପୁଜା କରିବେ । ତିନି ଧୁପରେ ଏ ଧୁପ ବଢ଼ିଲା ଉତାରେ ୩ ଥର ହବି ଦେବ । ଏ ଉତାରେ ଉପନଭୋଗ ମୁଣୋହି ୩ ବେଳ କରାଇବ । ରୋସୋଅରେ ନିତୀଦିନ ପାହାନ୍ତିରେ ପାଳିଆ ପଣ୍ଡା ବୈଷ୍ଣବାଗ୍ନି ହୋମ କରି ଅଗ୍ନି ସଂସ୍କାର କରିବ । ପାଳିଆ ପଣ୍ଡା ଅସୁସ୍ଥ ହୋଇଲେ ଅସଉଚ ହୋଇଲେ ଏ ନିମିତେଂ ଉପାଳିଆ ପଣ୍ଡା ଜଣେ ପୁଜା କରିବା ନିମନ୍ତେ ଉପବାସେ ଥିବ । ପର୍ବ ଯାତ୍ରା ମନରେ ବସ୍ତ୍ର ଚତୁସମ ମାଳ ଚୁଳ ସବୁ ସଂସ୍କାର କରି ଲାଗି କରାଇଲା ଉତାରଂ ଆଉର ପଶୁପାଳକ ଲାଗି କରାଇବ । ଦ୍ୱାଦସ ଜାତ୍ରାରେ ଦୁଇ ମୁଦ୍ରହସ୍ତ ଦୁଇ ବାଡ଼ରେ ଜାତ୍ରାମାନ ଲାଗିକରାଉ ଥିବ । ଏଥକୁ ବର୍ତ୍ତମାନ ପରମେଶ୍ୱରକଂ ବାଡ଼ ବିଷ୍ଣୁଶର୍ମା ମୁଦ୍ରହସ୍ତ ନିରଂସକ ହୋଇଲାକୁ ତଳିଆ ପଣ୍ଡା ପରମେଶ୍ୱରକଂ ବାଡ଼ରେ ଯାତ୍ରାମାନ ଲାଗି କରାଉଅଛି । ବିଷ୍ଣୁଶର୍ମା ମୁଦ୍ରହସ୍ତ ହୋଇଲେ ଏ ଲାଗି କରାଇବ । ଦେବସ୍ନାନ ମଣ୍ଡପ ଶ୍ରୀଗୁଣ୍ଡିଚା ଯାତ୍ରା ରଥ ଦୋଳମଣ୍ଡପ ଏମାନ ପ୍ରତିଷ୍ଠା କରିବ ପର୍ବ ଯାତ୍ରାମାନରେ ପ୍ରତି ଆରଧନା ଦେବତାମାନେ ଯାତ୍ରାକୁ ବିଜେ କରିବା ବେଳକୁ ଶ୍ରୀଅଗଂରଂ ମାଳ ଉଲାଗି କରି ଦେବତାମାନଙ୍କୁ ଅଗ୍ୟାଂମାଳ ଦେବ । ରଥ ଘଟଣ ନିମନ୍ତେ ରଥ ଅନକୁଳ ରଥ ଅଖ ଚକ ହୋଇବା ଦିନମାନରେ ଶ୍ରୀଅଗଂରଂ ମାଳ ଉଲାଗିକରି ତିନିବାଡ଼ରଂ ୩ ପାଳିଆପଣ୍ଡା

ମାହାଖଳାଠାରେ ନେଇ ଆଗ୍ୟାଂମାଳ ରଥ କାଠରେ ଦେ ଅନକୁଳ କରି ଛେଦନ କରିବା ବେଳକୁ ତିନି କାଠରେ ଦେବ । ଅଖ ଚକ ଲାଗି ଅନକୁଳ ଦିନର ଏହି ପ୍ରକାରେ [93b] ଅଖଚକରେ ଆଗ୍ୟାଂମାଳ ଦେବ । ରଥ ମହାଖଳାଠାରଂ ସିଂଘଦ୍ୱାର ଆସିବା ଦିନର ଏହି ପ୍ରକାରେ କରିବ । ରଥରେ ଆଗ୍ୟାଂମାଳ ଦେବ । ଶ୍ରୀଗୁଣ୍ଡିଚା ଯାତ୍ରା ଦିନେ ଥାଉଁ ରଥମାନ ପ୍ରତିଷ୍ଠାବିଧି କରିବ । ଗୁଣ୍ଡିଚା ଯାତ୍ରା ସାତଦିନ ରଥବଳି ଦେବ । ରାଜେନ୍ଦ୍ରାଅବିଷେକ ଦିନରୁ କୁଣ୍ଡି କଟକେ ରକ୍ମଣି ଠାକୁରାଣିକଂ ସ୍ୱୟମ୍ୱର ବାରତା ଆସି ଡ଼ଗରା ଛାମୁଖୁଣ୍ଟିଆ ... କହିଲାକୁ ଏ ଖୁଣ୍ଟିଆ ଡ଼ଗରା ଅଇଲା ବାରତା ଜଣାଇଲାକୁ ଠାକୁରକଂର ହୋଇ ପାଳିଆପଣ୍ଡା ଖୁଣ୍ଟିଆକୁ ଡ଼ଗରାକୁ ପ୍ରତିଉତର ବଚନ ପଢ଼ିବ । କୃଷ୍ଣଜନ୍ମ ଯାତ୍ରା ନିମିତେଂ ଦେବ ସଭାରେ ପୃଥ୍ୱୀ ଗୁହାରି କଲା ନିମିତେ ବ୍ରହ୍ମା ଛାମୁରେ ଜଣାଇଲାକୁ ଏ ବ୍ରହ୍ମାକୁ ଠାକୁରଙ୍କର ହୋଇ ପଣ୍ଡା ଜଣେ ପ୍ରତିଉତର ବାକ୍ୟ ପଢ଼ିବ । ପର୍ବଯାତ୍ରାମାନରେ ପ୍ରତିଅର୍ଚା ଦେବତାମାନକୁଂ ପୂଜା କରିବ । ଚନ୍ଦନଯାତ୍ରା ୪୦ ଦିନର ଦୁଇ ଓଳି ସିଂଘାଂସନ ଉପରେ ଉଠି ଚୀତ୍ର ଆଲଟ ତିନି ବାଡ଼ରେ ଲାଗି କରାଇବ । ପବିତ୍ରା ଯାତ୍ରାରେ ବେଦ ପଢ଼ି ପାଟ ପବିତ୍ରା ସୁତା ପବିତ୍ରା ଗଣ୍ଠି ବାଧୀଂବ ସବୁ ପୂଜାରେ ପରିକ୍ଷାକୁ ପ୍ରସାଦ ଦେବ । ଅଣସର ଯାତ୍ରା ତାଟି ଭିତରେ...କୋଠଲୋକ ହୋଇଂ ଦେଇତାପତିକିଂ ଜଗିଥିବାକୁ ଏ ପଣ୍ଡାମାନକଂ ଭିତର ପୁରାତନ ଜଣେ ତାଟି ଭିତରେ ପସିବ ॥୦॥

## ସିଂଘାରି ପଶୁପାଳକ ସେବା ଭିଆଣ ୧୮

ଏହାର ସେବା ସେବକ ଜ୧୨ଘ ଏ ନିତିଆନି ଖଟିବ ପଶୁପାଳକ ଜ୩ ଏମାନକଂର ଦେହ ଅସୁସ୍ଥ ଅଶୌଚ ହୋଇବା ନିମନ୍ତେ ଏ ସଗଂତେ ମିସିଥିବ ଜଣେ ଗାଏ ଜ୪ । ଏ ପାହାନ୍ତି ଅବକାସକୁ ଆସିବାବେଳକୁ ସ୍ନାନ ସାରି ଦେଉଳ ଦୁଆରେ ପାଦ ପ୍ରକ୍ଷାଳଣ କରି ଆଚମନ ସାରି ଭଣ୍ଡାର ମେଇକାପକୁ କହି ସିଂଘାଂସନ ଉପରେ ଉଠିବ, ଶ୍ରୀଅଗଂର ତଡ଼ାଉମାଳ ଚୁଳ ବସ୍ତ୍ର ଉଲାଗି କରି ଖଦି ଗୋଟାଏ ଗୋଟାଏ ଲାଗିକରାଇବ । ଏ ଉତାରେ ଶ୍ରୀମୁଖ ପଖାଳ ପୂଜା [94a] ଜେ ପଣ୍ଡାମାନେ କରନ୍ତି, ଏଥିକୁ କେଉଣିସି ଦିନରଂ ଏମାନକୁଂ ଏ ସେବା ଲାଗିଲାକୁ ଏମାନେ ସିଂଘାସନ ତଳେ ଫଠା ମାଡ଼ିବସି ଛାମୁରେ ଦରପଣ ଗୋଟୀଟା ଥୋଇ ଏଥି ପାଦ ପ୍ରକ୍ଷାଳଣ ଶ୍ରୀମୁଖ ପ୍ରକ୍ଷାଳଣ ଦାନ୍ତକାଠି ଲାଗିସାରି ଆଚମନ କରି ଧୁପଦିପ ଦେଇ ଶ୍ରୀମୁଣ୍ଡିରେ ପଞ୍ଚାମୃତ ସ୍ନାନ କରାଇ ଏ ଉତାରଂ ସୁଗନ୍ଧି ଅଏଁଳା ବଟା ତିଳ ଲାଗି କରାଇଂ ସୁବାସ ଉସ୍ନ ଜଳରେ ଶୀତଳ ଜଳରେ ସ୍ନାନକରାଇ ଧୌତ ଝିନ ଶୁକ୍ଳ ବସ୍ତ୍ରେ ଶ୍ରୀଅଙ୍ଗ ପୋଛି ସିଂଘାସନ ଉପରେ ଉଠି ସଂସ୍କାର କରି ଚତୁସମ ଲାଗି ବସ୍ତ୍ର ଲାଗି ତଢ଼ାଉ ଲାଗି ମାଳ ଚୁଳ ଲାଗି କରାଇଂ ଶ୍ରୀମୁଖରେ କର୍ପୁର ଲାଗି କରାଇବ । ଏ ପ୍ରକାରେ ସକାଳ ଧୁପ ଅବକାସ ବେସ କରିବ । ଏ ଉତାରେ ଜେତେ ଅବକାସ ହୋଇବ ତହିଁ ବସ୍ତ୍ର ତଢ଼ାଉ ଉଲାଗି କରି

ବଶ୍ର ଚତୁସମ ତଢ଼ାଉ ମାଳ ଚୁଳ ଲାଗିକରାଇବ । ଜେଉଁ ଅବକାସରେ ଜେଉଁ ବେସ କରି ଜୋଗାଇ ସେ ପ୍ରକାରେ ବେସ କରିବ । ଦ୍ୱାଦଶ ଯାତ୍ରା ବାହାରେ ଆଉ ସବୁ ସର୍ବାଙ୍ଗ ଏ କରିବ । ଶ୍ରୀଅଙ୍ଗରୁ ତଢ଼ାଉ ଉଲାଗି ହୋଇଲେ ଭିତର ଭଣ୍ଡାର ମେଇକାପକୁ ଭଣ୍ଡାର ଘର ଦ୍ୱାରଠାକୁ ବହିଆଣି ଗଣମଣ କରିଦେବ । ଲାଗି ବେଳକୁ ଗଣମଣ କରି ଲାଗିକରାଇବ । ଏ ଲାଗିରେ ବଇସମ ହୋଇଲେ ଏ ଦେବ ଉପଯାତ୍ରାମାନରେ ମୁଦଲହସ୍ତ ପଣ୍ଡା ସର୍ବାଙ୍ଗ ଲାଗି କରାଇବେ । ଏ ଉତାରେ ଏ ଆଉ ଚତୁସମ ସବୁ ଏ ଲାଗି କରାଇବ । ବଇସାଖ ଶୁକ୍ଳ ତୃତୀୟା ଦିନରଂ ଯେଷ୍ଟ ଶୁକଳ ଦ୍ୱାଦଶି ସରିକି ଚନ୍ଦନଯାତ୍ରା ଦିନମାନରେ ସକାଳ ଧୁପ ବଢ଼ି ଦହିକଡ଼ମା ଭୋଗ ବଢ଼ିଲା ଉତାରେ ଉଲାଗି କରି ସିଂଘାସନ ଉପରେ ଉଠି ମୁଠି ଆଲଟ ଘେନି ଲାଗି କରାଇବ । ସଝଂଧୁପ ବଢ଼ିଲା ଉତାରେ ଉପନଭୋଗ ମଡ଼ଫୁଲି ବଢ଼ିଲା ଉତାରେ ତଢ଼ାଉ ଲାଗିକରି ଆଲଟ ଲାଗିକରାଇବ । ଓଢ଼ଣଯାତ୍ରା ଅଦିବାସ ଲୁଗା ଚାଙ୍ଗଡ଼ା ମୁଦ୍ରହସ୍ତ ପଣ୍ଡା ପତି ଏମାନଙ୍କ ସାଗେଂ **[94b]** ଦେଉଳବେଢ଼ା ବୁଲାଇଂଆଣି ଶ୍ରୀଅଙ୍ଗରେ ଓଢ଼ଣ ଲାଗି କରାଇବ । ଅଙ୍ଗାଭରଣ ତଢ଼ାଉ ଲାଗିରେ ଚିତା ଲାଗି ସଲଖ ବାକଂ କହିବ । ମଗୁସିର ମାସରେ ଦୁଇ ବାଡ଼ରେ ଦସ ଅବତାର ମୂର୍ତ୍ତିମାନ କାଛିବ । ଅଣସର ଯାତ୍ରା ଟାଟି ଭିତରେ ଦେଇତାପତିକି ଜଗିଆ ନିମନ୍ତେ କୋଠର ଲୋକ ହୋଇ ଜଣେ ଜଗିଆ ହୋଇଂ ପସିବ । ଏ ସବୁ ... ... ସେବା ସାରି ଜିବାବେଳକୁ ଫାରକ ମୁଦୁଲିକି ଝଡ଼ା ସୋଧା ଦେଇଂ ଜିବ । ସବୁ ଅବକାସେ ପରିକ୍ଷାକୁ ପ୍ରସାଦ ଦେବ ।।୦।।

**ଛାମୁଖୁଣ୍ଟିଆ ସେବାକୁ ଛାମୁ ଖୁଣ୍ଟିଆ ସେବକ ସେବା ୧୯**

ଏ ସିଂହାସନ ଜଗିବ, ଫୁଲ ତୋଟାମାନର ମାଳି ଗୋଛାଇତ ତହୁଁ ନିତିଆନି ଫୁଲ ଚୁଳ ମାଳ କରପଲ୍ଲବ ନାଏକାଳକା ସରାଜର କବର ଚକିଆ ଭିଆଣ ପ୍ରମାଣେ ଗଣମଣ କରି ଘେନି ଫୁଲ ଘରେ ସାଇତିବ । ଅବକାସମାନ ବେଳକୁ ସିଘାଂରି ପଶୁପାଳକକୁ ହକରାକରି ନେମ, ଜେଉଂ ଅବକାସରେ ଜେଉଂ ଫୁଲ ଲାଗିକି ଦେବାର ସେ ଫୁଲମାନ ଚାଗଂଡ଼ାରେ ନେଇ ଖଟଣିକି ବଢ଼ାଇଦେବ । ଏ ଅବକାସମାନରେ ଅଧରେ ଲାଗିକି ଭଣ୍ଡାର ମେଇକାପଠାର ମାଗିନେଇ କପୁର ଦେବ ... ଯାତ୍ରାମାନରେ ରାଜପ୍ରସାଦ ଦଅଣା ଧଣ୍ଡୀ ଫୁଲଧଣ୍ଡୀ କରଣକୁଂ ପଚାରି ଦଅଣା ଗୋଛାଇତ ତହୁଁ ଘେନିମ ଜାତ୍ରାମାନରେ ଖଟିବ । ସବୁ ଅବକାସ ବେଳରେ ସବୁ ଯାତ୍ରାମାନ ବେଳକୁ ପରିକ୍ଷାକୁ କହିବ । ଯାତ୍ରାମାନରେ ମୁହସ୍ତକୁ ଏହା ମଠରଂ ହକାରାକରି ଆଣିମ । ଦୋଳଯାତ୍ରା ସ୍ନାନଯାତ୍ରା ଶ୍ରୀଗୁଣ୍ଡିଚା ଯାତ୍ରା ରଥ ମଣ୍ଡଣି ମଧ କରି ଏମାନ ମଣ୍ଡିବ । ନିତ୍ୟାନି ପୁଷ୍ପ ଆଙ୍କୁଂଳି ବେଳେ ଦେବସ୍ନାନ ଯାତ୍ରା ଶ୍ରୀଗୁଣ୍ଡିଚାଯାତ୍ରା ପହଣ୍ଡିବିଜେ ବେଳେ ଝଡ଼ାଫୁଲ ବିଛିଂବ । ରାଜେନ୍ଦ୍ରା ଅବିଷେକରେ ରକ୍ମଣି ଠାକୁରାଣିକଂ ସ୍ୱୟମ୍ବର ବାରତା

କୁଣ୍ଡି କଟକରଂ ଆସି [95a] କହିଲା କୁଏଢ଼ ଗଲା ଅଇଲା ଛାମୁରେ ଜଣାଇବ । ଦେବବିଭା ଯାତ୍ରାରେ ରକ୍ମଣି ଠାକୁରାଣିକଂ ହରଣ ଭାସା ପଇଠରେ ଠାକୁରକଂର ହୋଇଂ ରଂକଣ ଯୁଦ୍ଧ ଠାରେ ରକଣକୁଂ ପଛ ବାହା କରି ରଥରେ ବାନ୍ଧିବ । ପରମେଶ୍ୱରକଂ ନିତ୍ୟାନି ଅବକାସରେ ମଇଲମବେଳେ ଛାମୁରେ ମଇଲମ ଲୁଗାର ଲୁଗା ଗୋଟାଏ ଘେନି ଟେରା ଧରିବ । ଚନ୍ଦନଯାତ୍ରା ପଞ୍ଚାଳିସି  ଦିନ ରାତ୍ର ଦିବସ ଆଳଟ ଲାଗିକି ପଣ୍ଡା ପଶୁପାଳକମାନକୁଂ ଡ଼ାକିବ ରାତ୍ର ଆଳଟ ଲାଗି ସଂପୂର୍ଣ୍ଣେ ସଂଖୁଆକୁ ସଂଖବା ବୋଲି ଡ଼ାକିବ । ରଜାକଂ ଦରସନ ବେଳକୁ ଜଗମୋହନ ଦୁଆର କଳାପାଆଛଠାରୁ ଅନନ୍ତ ପରି ହକରାକରି ଛାମୁକୁ ନେମ । ଜେଉଂ ଜାତ୍ରାମାନରେ ପରିକ୍ଷା ଛାମୁକୁ ଯିବାର ସେ ଯାତ୍ରାମାନରେ ବାହାର କଳା ପାଆଛଠାରଂ ପରିକ୍ଷାକୁ ଅନନ୍ତ ପରି ହକରା କରିନେମ । ସବୁ ଅବକାସ ମାନରେ ମଇଲମ ଉତାରେ ପରିକ୍ଷାକୁ ପ୍ରସାଦ ନେଇ ଦେବ । ଅଣସର ଯାତ୍ରାରେ ଟାଟି ଦୁଆର ଜଗି ବସିବ ।  ସକାଳ ଧୁପ ବଢ଼ିଲା ଉତ୍ତାରେ ସିଂଘାସନ ପାଖେ ଅରଗଳି କାଠ ଖଞ୍ଜିଂବ ॥୦॥

## ଶ୍ରୀମୁଖ ସିଂଘାରୀମାନ ସେବାକୁ ୧୯

ଏ ସେବା ଦେଇତାପତିର ସେବା ଏ ସେବା କଉଣିସି ଦିନର ଭିନେବତ ସେବକ ହୋଇଲାକୁ ଏହାର ସେବା ୩ ବାଡ଼ରେ ୩ ସେବକ ଖଟଇ ଏ ସେବା ଖଟଇ ପାହାନ୍ତି ଅବକାସ ବେଳକୁ ସ୍ନାନ କରି ଆସି ପାଦ ପ୍ରକ୍ଷାଳଣ କରି ଭଣ୍ଡାର ମେଇକାପକୁ କହି ମଇଲମ ବଢ଼ିଲା ଉତାରେ ସିଂଘାସନ ଉପରେ ଉଠି ଭଣ୍ଡାରୁ କପୁରପାଣି ... ଶ୍ରୀମୁଖମାନ ପୋଛିବ ।  ଅଣସର ଯାତ୍ରାରେ ଆଷାଢ଼ କୃଷ୍ଣ ତ୍ରୟୋଦସି ଦିନ ସକାଳ ଧୁପ ବଢ଼ିଲା ଉତାରେ ଦଖିଣ ଦୁଆରେ ପରିକ୍ଷା ପଟୋଆର କଲା ଉତାରେ ଏହା ଘରଠାର କପୁର ଖଡ଼ି ଲାଗିକି ଦୁଧ [95b] ଖଡ଼ି ହାଣ୍ଡିମାନ ଘଣ୍ଟ କାହାଳି ବାଜି ଛତା ଧରାଇଂ ଘେନି ଆସିବ । ଭଣ୍ଡାରଂ ଏ ଖଡ଼ିରେ କପୁର ମିସା ଗୋଳିବ ।  ଖୁଣ୍ଟିଆ ପରିକ୍ଷାକୁ କହିଲା ଉତାରେ ଟାଟି ଭିତରକୁ ସୁବର୍ଣ୍ଣ ପାତ୍ର ମାନରେ ଖଡ଼ି ପୁରାଇଂ ନେମ । ଦେଇତା ପଶୁପାଳକ ଖଡ଼ି ସଂସ୍କାର କରି ଶ୍ରୀଅଙ୍ଗେ ଲାଗି କରାଇଲା ଉତାରେ ୩ ବାଡ଼େ ସର୍ବାଙ୍ଗଯାକରେ ଖଡ଼ି ଲାଗି କରିବ ।  ଏ ଉତାରେ ଟାଟି ଭିତରଂ ବାହାର ହୋଇ ପରିକ୍ଷା ହାତରେ ରାଜପ୍ରସାଦ ଦେବ  । ଏ ଉତାରେ ପରିକ୍ଷା ପରକରଣମାନକୁଂ ପ୍ରସାଦ ଦେବ । ଆର ଦିନର ବଗଡ଼ା ବନକ ଶ୍ରୀମୁଖମାନରେ ସୁତା ଧରି ଭାଗମାପ କରିଂ ବନକ ଲାଗି କରାଇବ । ଆର ଦିନର ସାରେଆ ବନକ କପୁର ମିସାଇଂ ଲାଗି କରାଇବ । ଶ୍ରୀବଳରାମଦେବକୁଂ ଧବଳ ପୁଣ୍ଡରୀକାକ୍ଷ ମୂର୍ତ୍ତିରେ ଲେପନ କରିବ । ଶ୍ରୀଅଙ୍ଗରେ ଦ୍ୱାଦଶ ଫୋଟା ଲେଖନ କରିବ ।  ଶ୍ରୀଜଗନ୍ନାଥଦେବକୁଂ ନୀଳମେଘର ପ୍ରାଏ ସ୍ୟାମସୁନ୍ଦର ମୂର୍ତ୍ତି ଲେପନ କରିବ । ଶ୍ରୀଅଙ୍ଗରେ ଦ୍ୱାଦଶ ଫୋଟା ଲେଖନ କରିବ ଶ୍ରୀସୁଭଦ୍ରା ମୂର୍ତ୍ତି

କୁଙ୍କୁମବର୍ଣ୍ଣ କରିଂ ଲେଖନ କରିବ । ନେତ୍ର ଉଛବ ଯାତ୍ରାବେଳକୁ ପାଖେ ଥାଇଂ କଳା ଡ଼ୋଳାମାନ ଦେବ । ଶ୍ରୀମୁଖମାନ ଉପର ଦୃଷ୍ଟି ତଳଦୃଷ୍ଟି ବକ୍ର ଦୃଷ୍ଟି କରି ଲେଖନ ନ କରିବ ସମାନ ଦୃଷ୍ଟିକରି ଲେଖନ କରିବ । ମାସକୁ ମାସ ଯାତ୍ରାମାନରେ ଶ୍ରୀମୁଖ ମାନରେ ବନକମାନ ଲାଗିକରାଇବ । ଶ୍ରୀଗୁଣ୍ଡିଚାଯାତ୍ରା ବାହୁଡ଼ା ବିଜେ ଉତାରେ ଶ୍ରୀପୟରମାନ ପହଣ୍ଡି ବିଜୟରେ ବଇସମ ହୋଇଥିବା ନିମନ୍ତେ·ଦେଇତାପତି ଶ୍ରୀପୟରେ ମଡ଼ିଆଳ ଲାଗି କଳା ଉତାରେ ଏଠା ଖଡ଼ିଲାଗି କରାଇବ । ଏ ବନକ ଲାଗି ନିମିତେଂ ବନକ କିରଣକୁ ପରବ ଯାତ୍ରା ଭିଆଣେ କୋଠୁ ସୁନା ପାଇବ । ଏହାର ଅଶୌଚ ନାହିଁ ।।୦।।

## ଚାଙ୍ଗଡ଼ା ମେଇକାପ ସେବକ ସେବା ଭିଆଣ ୧୮

ଏ ପାହାନ୍ତି ଅବକାସ ଆଦିକରି ରାତ୍ର ବଡସିଂଘାର ଅବକାସ ସରିକି ଢେଉଁ ଅବକାସେ [96a] ଜେଉଂ ବେଶ ହୋଇବେ ସେ ପ୍ରକାରେ ଲାଗିକି ପଶୁପାଳକ ହାଥକୁ ମଡ଼ିଆଳ ବଢ଼ାଇଂ ଦେବ । ଜେଉଂ ଅବକାସେ ଢେଉଂ ମଡ଼ିଆଳ ଲାଗିହୋଉଥିବେ, ଉଲାଗି ଉତାରେ ସବୁ ଲୁଗା ସିଂଘାରି ପଶୁପାଳକଠାରୁଂ ଗଣମଣ କରି ଘେନି ପେଢ଼ାରେ ସାଇତିବ । ଆର ଦିନର ଲାଟ ମଡ଼ିଆଳ ମଡ଼ିଆଳି ମାହାସେଠି ମୁଳେ ଗଣମଣ କରିଦେବ । ଏ ଲୁଗା ଧୋବ ଦେଇଂ ଅଇଲା ଉତାରେ ମାହାସେଠି ଠାରଂ ଗଣମଣ କରି ଘେନିବ । ଏ ଲୁଗାମାନ ଭାଗକରି ସାଇତିବ । ମକର ଗନ୍ତା ମେଷ ଗନ୍ତା ଦିବ୍ୟ ଅବତାର ଗନ୍ତା କୁଆଂର ଗନ୍ତା ଏ ବାହାରେ ରାଜଦତର ଜଜମାନ ଦତ ଲୁଗା ମଇଧକରି ସିପୁଟି ମହାରଣା ଚିହ୍ନିଦେଲା ଉତାରେ ଘେନିମ । ଗନ୍ତାକୁଗନ୍ତା ବେହେରଣେ ପାଢ଼ିଂଆ ଢଣେ ଗଣମଣ କରି ଘେନିବ । ଗନ୍ତାକୁଗନ୍ତା ଲୁଗା ଲାଗିହୋଇଲେ ଗନ୍ତାବାହୁଡ଼ା କରି ପାଢ଼ିଂ ପ୍ରମାଣେ ଗଣମଣ କରି ଭଣ୍ଡାର ମେଇକାପ ମୁଳେ ଦେବ । ନାନା ପରବ ଯାତ୍ରା ମାନରେ ପରମେଶ୍ୱରକଂ ଗହଣେ ଖଦି ବିଛିବ । ଚାଗଂଡ଼ାରୁ ସାଡ଼ି ବଏ ହୋଇଲେ ପରିକ୍ଷା ହାଥରେ ଛୁଆଇଂ ସାଡ଼ୀ ଦେବ । ଏ ଲୁଗାରେ ବଇସମ ପଡ଼ିଲେ ଏ ଦେବ । ରଢାଏ ପରିକ୍ଷା ପରମେଶ୍ୱରକଂ ଦରଶନକୁ ଛାମୁକୁ ଗଲେ ହାଥ ଧୋଇଲା ଉତାରେ ହାଥ ପୋଛିବାକୁ ଚାଗଂଡ଼ାରୁ ଖଦି ଗୋଟାଏ ଖଟିବ ।।

## ଭିତର ଭଣ୍ଡାର ମେଇକାପ ସେବାକୁ ।

ଏ ନିତିଆନି ଜେଉଂ ଦିନେ ଢେଉଂ ପିଣ୍ଡିକା ପଡ଼ିବ ହିରା ମାଣିକ ସୁନା ରୁପା ଟକାଂ କର୍ପୁର କସ୍ତୁରୀ ଗନ୍ଧଚନ୍ଦନ ନେତ ପାଟ ପତନି ଛାପବାନ୍ଧ ଶୁକଳ ଲୁଗା ଚାନ୍ଦୋଆ ଚଅଂର ତମ୍ବା କଂସା ନାନା ସରକମାନ ମଧକରି ବେହୋରଣେ ତୁଳପଳ ମାପଚୁପ ଗଣମଣ କରି ଘେନି ପରିକ୍ଷାଠାରେ ମୁଦ ଦେଆଇ ଭଣ୍ଡାରେ ସାଇତିବ । ପାହାନ୍ତି ଅବକାସେ ଟେରା ଫିଟିଲା ଉତାରେ ବଇଠା ଘେନି ସିଂଘାସନ ଉପରେ ଉଠି ଶ୍ରୀଅଙ୍ଗ[96b]ମାନ ମଣିବ, ଚତୁସମ ଲାଗି ବେଳେ ଚତୁସମ କପୋରା ଘେନି ସିଂଘାରି

ପଶୁପାଳକ ହାତକୁ, ଚଟୁସମ ବଢ଼ାଇଦେବ । ଜେଉଂ ଅବକାସେ ଜେଉଂ ତଢ଼ାଉ ଲାଗିହୋଇବାର ଭଣ୍ଡାରଂ ତଢ଼ାଉ ଆଣି ଲାଗିକି ଖଟିବ । ତଢ଼ାଉ ଉଲାଗି ଉତାରେ ସିଂଘାରି ପଶୁପାଳକ ତଢ଼ାଉ ଆଣି ଭଣ୍ଡାର ଘର ଦୁଆରେ ଦେବ, ଏହା ତହୁଂ ତଢ଼ାଉ ଗଣମଣ କରି ଘେନି ସାଇତିବ । ସିଂଘାସନଠାରେ ପାଳିଆ ମେଇକାପ ଜଗିଥିବ ରନ୍ ଆଲଟ ଘେନି ସିଂଘାସନ ତଳେ ଥାଇଂ ଶ୍ରୀଅଙ୍ଗକୁ ଆଲଟ ଲାଗି କରାଇବ । ପାହାନ୍ତି ଅବକାସଠାରଂ ପୁଷ୍ପ ଆଞ୍ଜୁଂଳି ବନ୍ଦାପନା ସରିକି ଜେତେ କପୁର ଆଳତି, ଏ ବାହାରେ ପରବଯାତ୍ରାମାନ ପୂଜାକୁ, ଏ ଯାତ୍ରାମାନ ବନ୍ଦାପନାକୁ ମଇଧ କରି ସବୁ କପୁର ଆଳତିକି ଭଣ୍ଡାରୁ କପୁର ଖଟିବ । ପଣ୍ଡା ପଶୁପାଳକ ଦେଇତା ପଶୁପାଳକ ଶ୍ରୀମୁଖ ସିଂଘାରି ଏମାନେ ସିଂଘାସନ ଉପରକୁ ଉଠିଲା ବେଳକୁ ମେଇକାପକୁ ଗ୍ୟାତା କରି ଉଠିବେ । ଅଣସର ଯାତ୍ରା ଡାଟି ଭିତରେ ଦେଇତା ପଶୁପାଳକକୁ ଜଗିଥିବ । ପୁଷ୍ୟାଅବିଷେକ ଯାତ୍ରାରେ ଗୁରୁବାର ଏକାଦଶି ଅବିଷେକ ଯାତ୍ରାରେ ସିଂଘାଂସନ ଉପରେ ଉଠି ପରମେଶ୍ୱରକଂ ତ୍ରିମୁଣ୍ଡିରେ କନକଦଣ୍ଡ ଛତ୍ରି ଧରିବ । ତିନିଧୁପ ପୁଜା ଉତାରେ ପରବ ଜାତ୍ରାମାନରେ ଷୋଡ଼ଶ ଉପଚାର ପୂଜା ଉତାରେ ଅବକାସ ମାନରେ ମଧକରି ସିଂଘାସନ ପୋଛିବ । ଶ୍ରୀମୁଖ ସିଂଘାରି ଶ୍ରୀମୁଖ ମାନରେ ବନକ ଲାଗି କରାଇବା ବେଳକୁ ଶ୍ରୀମୁଖକୁ ବଇଠା ଦେଖାଇବ । ରାଜପ୍ରସାଦ ...ହାଥରେ ମୁଦରସ୍ତ ଦେବାବେଳକୁ ପରିକ୍ଷା ହାଥୁଂ ଘେନି ଭଣ୍ଡାରେ ଥୋଇଂଥିବ । ଓଢ଼ଣ ଯାତ୍ରା ଲାଗିରଂ ଓଢ଼ଣ ଘୋଡ଼ ମାଠ ପଡ଼ି ଦୋପଟା ମଇଧ କରି ଯେତେ ଲୁଗା ଲାଗିହୋଇବାର ସବୁ ଭଣ୍ଡାରେ ସାଇତିଥିବ । ଲାଗିବେଳକୁ ଖଟିବ । ଉଲାଗି ଉତାରେ ପଶୁପାଳକଠାରୁଂ ଗଣମଣ କରି ଘେନିବ । ଗନ୍ତା ବାହୁଡ଼ା ହୋଇଲେ ଚାଗଂଡ଼ା ମେଇକାପ**[97a]**ଠାରଂ ବେହେରଣେ ଗଣମଣ କରି ମୁଦଦେଆଇଂ ଲୁଗା ସାଇତିବ । ପରବଜାତ୍ରା ମାନରେ ପରମେଶ୍ୱରକଂ ଗହଣେ ଗିଲିମି ରନ୍ ଆଲଟ ଘେନି ଥିବ । ରଜାଏ ଶ୍ରୀପୁରୁଷୋତ୍ତମେ ବିଜେକରିଥିଲେ ଦରସନବେଳକୁ ଉପଚାର ସାମିଗ୍ରି ଖଟିବ । ରାଜକଟକକୁ ଭଣ୍ଡାର ପଦାର୍ଥ ଗଲେ ଏ ନେଇଂ ପରବେଶ କରିବ । ପୁଷ୍ପ ଆଞ୍ଜୁଂଳି ବନ୍ଦାପନା ବଢ଼ିଲା ଉତାରେ ଭଣ୍ଡାର ଦୁଆରେ ମୁଦ ଦେଆଇଂ ଏ ଦୁଆର ଜଗି ଶୋଇବ ।।

**ଅଖଣ୍ଡ ମେଇକାପ ସେବା ୧୮**

ଏ କୋଠୁଂ ଭିଆଣ ମାଲପା ସଳିତାକୁ ନୁଆ ଧୋବ ଲୁଗା ଘେନି ବଇଠା ବସାଇବ । ଛାମୁ ଦୁଇ ଖମ୍ବଠାରେ ସୁନା ସିକଳା ଲାଗି ଦିପ ଗୋ୪ ଗମ୍ଭରା ବାଡ଼ରେ ମାଟି ଦିପ ଗୋ୧୦ ମୁଣୋହି କୋଠା ବାଡ଼ରେ ଦିପ ଗୋ୪ ଜଗମୋହନ ଦୁଆର କଳାପାଆଛଠାରଂ ଭିତରେ ଦିପ ଗୋ୪ ଗାଏ ବାଡ଼ ଦିପ ଗୋ୧୬ ଭଣ୍ଡାର ଘର ଭିତରେ ଦିପ ଗୋ୧ ଏ ଦୁଆରେ ପିଣ୍ଡିକା ଆଳିଠାରେ ଦି୧ ପରିକ୍ଷା ବେହେରା ତଳିଛୋ ବେହୋରଣେ ମଇଧକରି ରାତ୍ରେ ଦେବ ବଇଠା ଗୋ୩ ଏତେ ଠାରେ ପାହାନ୍ତି ଅବକାସ

ଠାଗଂ ରାତ୍ରେ ପୁଷ୍ପ ଆଙ୍କୁଂଳି ବଢ଼ିବା ପରିଜନ୍ତେ ବଇଠା ଢାଳିବ । ଏ ଉତାରେ କପାଟ ପାଡ଼ିବାବେଳକୁ ଭିତର ଗମ୍ଭରା ସୁନାଦିପ ଲିବାଇଂ ଭଣ୍ଡାରେ ପଇଠ କରିବ । ବାଡ଼ ଦିପମାନ ଲିବାଇବ ସବୁ ବଇଠା ଲିବାଇଂ ବଇଠା ଗୋଟିଏ ଜାଳି ଜଗି ସୋଇବ । ଜାତ୍ରା ମାନରେ ପ୍ରତିଅରଚା ଦେବତା ଛାମୁକୁ ଯାଇଂ ଶ୍ରୀଅଙ୍ଗରଂ ଆଗ୍ୟାଂମାଳ ପାଇ ବାହାରକୁ ବିଜେକରି ଆସିବା ବେଳକୁ ଏ ଦେବତା ଛାମୁରେ ବଇଠା ଦେଖାଇ ଆଣି **[97b]** ମୁଣୋହି କୋଠା ଠାରେ ଛାଡ଼ିବ । ତିନିଧୁପ ନାନା ପୂଜାବେଳକୁ ଭୋଗ ମୁଣୋହିଠାରେ ବଇଠା ବସାଇବ । ରଜାଏ ପରମେଶ୍ୱରଙ୍କୁଂ ଦରସନ କରି ଯିବା ଆସିବା ବେଳକୁ ମୁଣୋହି କୋଠା ଜାଏ ବଇଠା ଦେଖାଇବ । ପରିକ୍ଷା ପରମେଶ୍ୱରକଂଠାକୁ ଯିବା ଆସିବା ବେଳକୁ ଏହି ପ୍ରକାରେ ବଇଠା ଦେଖାଇବ ॥୦॥

## ସେଜଘର ମେଇକାପ ସେବା ୧୮

ଏ ଖଟ ସେଜର ଜେତେ ଲୁଗା ଲାଗଇ ସେଜ ସୁପାତି ମୁଚୁଳା କୋର ମୁଚୁଳା ଶ୍ରୀପୟର ମୁଚୁଳା ଗାଲ ମୁଚୁଳା ଖଟ ମଡ଼ା ଖଟଘୋଡ଼ା ସେଜ ପଡ଼ା କୋର ପାଏଡ଼ାରୁ ଆଙ୍କୁଂଳି ବିଜେ ଦାଣ୍ଡ ପାଆଡ଼ ମସହେରି ବାଡ଼ ମଇଧ କରି ଗଣମଣ କରି ଘେନିଜିବ । ଦୁଇ ପହର ଧୁପ ବଢ଼ି ଉପନଭୋଗ ବଢ଼ିଲା ଉତାରେ ଜଗନ୍ନାଥ ବଲ୍ଲଭ ଅବକାଶ ବେଳକୁ ଛାମୁରେ ଖଟ ସେଜ ସେଜାଇ ନେଇ ବିଜେକରାଇବ ରାତ୍ରେ ବଲ୍ଲଭ ଭୋଗ ବଢ଼ିଲା ଉତାରେ ଛାମୁରେ ଖଟ ସେଜ ଏ ପ୍ରକାରେ ନେଇ ବିଜେ କରାଇବ । ଏ ଖଟ ମାନରେ ପାଟଶେଯ ସୁପାତି ପାରି ମୁଚୁଳା ଶ୍ରୀପୟର ମୁଚୁଳା କୋଡ଼ ମୁଚୁଳା ଗାଲ ମୁଚୁଳି ଏ ଉପରେ ଉଲାକ୍ଷ ଝୋଲା ପାଛୋଡ଼ି ଘୋଡ଼ାଇଂ ଫୁଲମଣ୍ଡା ଗୋଟୀଏ ଗୋଟିଏ ଥୋଇବ । ଖଟ ଉପରୁ ସିଂହାସନ ଶ୍ରୀପୟର ସରିକି କୋ...ପାଏଡ଼ ଝୋଲାଲୁଗା ପାଡ଼ିବ । ଖଟତଳେ ଖଟ ସରା ପାଛୋଡ଼ି ପାରି ଖଟ ବିଜେ କରାଇବ । ଖଟମାନ ପାଖରେ ଝୋଲା ମସହେରି ବାଡ଼ ବାନ୍ଧିବ । ତିନି ପଲକଂ ତଳେ ସିତଳ ସିଂଘାର ଭୋଗ ବାଢ଼ିବ । ସିହାସନ ତାଲୁଂ ପରମେଶ୍ୱରକଂ ପଲକଂ ପାଖ ଦେଇ ଜଗମୋହନ ଦୁଆର କଳାପାଆଛ ସିରିକି ପୁଷ୍ପ ଆଙ୍କୁଂ**[98a]**ଳି ବିଜେ ନିମନ୍ତେ ଦାଣ୍ଡ ପାଏଡ଼ା ଲୁଗା ପାଡ଼ିବ । ପୁଷ୍ପ ଆଙ୍କୁଂଳି ବିଜେ ବଢ଼ିଲା ଉତାରେ ଦାଣ୍ଡ ପାଏଡ଼ାଲୁଗା ସାଇତିବ । ଅଣସର ଜାତ୍ରାରେ ଚକା ଅପସର ସାଇତିବ । ନେତ୍ର ଉଛବ ଜାତ୍ରାରେ ସିଂଘାସନ ବିଜୟରେ ଚକା ଅପସର ଖଟିବ । ପାହାନ୍ତି ଅବକାସମାନ ବଢ଼ିଲା ଉତାରେ ଖଟ ସେଜ ସେଜଘରେ ବିଜେ କରାଇବ ॥୦॥

## ସୁଆର ବଡୁ ସେବା ୧୯

ଏ ପରମେଶ୍ୱରକଂ ମଇଲମବେଳକୁ ସିଂହାସନ ଉପରକୁ ପଶୁପାଳକକୁ କାଠ ଘୋଡ଼ା ବଢ଼ାଇଦେବ, ଧୁପ ଅବକାଶ ପରବଯାତ୍ରା ଜେତେ ଠାରେ ମଇଲମ ହୋଇବ, ଏତେ ଠାରେ ଘୋଡ଼ା ବଢ଼ାଇଦେବ । ପାହାନ୍ତି ଅବକାଶଠାରୁ ବଲଭ ଭୋଗ ସରିକି

ଢେତେ ବେଳ ଗମ୍ଭରାରେ ମୋଣୋହି କୋଠାରେ ଭୋଗ ମଣ୍ଡପରେ ପରବ ଢାତ୍ରା ମାନରେ ମଇଧ ହୋଇ ଢେତେଥର ଭୋଗ ମୁଣୋହି ହୋଇବେ ତେତେ ଥର ଭୋଗ ବାହାର ହୋଇ(ଲା)... ପାଣି ପକାଇ ଦୁଇଥର କରି ଧୋ ପଖାଳ କରି କୋଠୁଂ ଚମଡ଼ୀ ଲୁଗା ପାଏଡ଼ା ଘେନି ପୋଛା ମାରିବ । ଭୋଗ ମୁଣୋହି ବେଳକୁ ଛାମୁରେ ଭୋଗ ଉଠିବାକୁ ଲୁଗା ପାଆଡ଼ ପାରିବ । ପୂଜାମାନରେ ଧୂପ ଆଳତି ଦେବା ନିମନ୍ତେ ରୋସୋରୁ ନିଆଁ ଆଣି ଖଟିବ । ପୂଜାମାନରେ ଧୂପ ଦିପ ସାତବତି ସଜଂଧୂପରେ ସଜଂକାଳି ବନ୍ଦାପନା ଆଳତି ପଣ୍ଡାମାନଙ୍କୁ ବଢ଼ାଇଦେବ । ଏକାଦଶି ଦିନ ସଜଂ ଧୂପରେ ମହାଦିପ ପଣ୍ଡାମାନଙ୍କୁ ବଢ଼ାଇଦେବ । ପରବ ଯାତ୍ରାମାନ ବନ୍ଦାପନାରେ ସଜଂକାଳି ବନ୍ଦାପନା ଖଟିବ ॥

**[98b] ପତ୍ରିବଡୁ ସେବାକୁ**

ଧୂପ ପୂଜାମାନରେ ଏ ମୁଳେ ଭିଆଇଂ ଦେଇଂ ଥିଲାର ପଂଚାମୃତ ଉପଚାର ଦ୍ରବ୍ୟମାନ ଖଟିବ । ଭଣ୍ଡାରଂ ପୂଜା ସୁନା ରପା ପାତ୍ରମାନ ପୂଜାଘଣ୍ଟି ଧୂପଦୀପ ଆଳତି ମଇଧ କରି ଗଣମଣ କରି ଦେଇ ଖଟିବ । ପୂଜାବେଳକୁ ପାଳିଆପଣ୍ଡାମାନଙ୍କୁ ହକରାକରି ଆଣି ପୂଜାକରାଇବ । ଉପଚାର ସାମିଗ୍ରିମାନ ସବୁ ପଣ୍ଡାମାନଙ୍କୁ ବଢ଼ାଇଦେବ । ଧୂପ ପୂଜା ବଶ୍ର ଲାଗିକି ଭଣ୍ଡାରଂ ନୂଆ ପତନି ଲୁଗା ନେଇଂ ଖଟିବ । ଧୂପ ଦୀପ ପରିଢନ୍ତେ ପଣ୍ଡାମାନଙ୍କୁ ସବୁ ବଢ଼ାଇଦେବ । ଢେତେ ଥର ପୂଜା ହୋଇବ ପରବ ଢାତ୍ରାମାନରେ ଢେତେ ପୂଜା ହୋଇବ, ବାହାର ଢାତ୍ରାମାନରେ ଢେତେ ପ୍ରତିଅରଚା ଦେବତାମାନର ପୂଜା ହୋଇବ, ସବୁଠାରେ ପୂଜା ସାମିଗ୍ରି ଖଟୀବ, ପୂଜା ବଢ଼ିଲା ଉତାରେ ଉପଚାର ସୁନା ରପା ପାତ୍ରମାନ ଭଣ୍ଡାରେ ଗଣମଣ କରାଇ ଦେବ । ତିନି ଧୂପ ପୂଜା ଉପଚାର ସମଧର ଶଂଙ୍ଖ ପାଦୁକର ଢାଏ ଶ୍ରୀପୁରୁଷୋତ୍ତମ ବିଢେ କରିଥିଲେ ରଜାକୁଂ ଦେବ । ନୋହିଲେ ପରିକ୍ଷାକୁ ଦେବ । ଶଙ୍ଖ ନାଳରେ କାହାକୁଂହି ପାଦୁକ ନ ଦେବ । ଉପଚାର ସୁନା ରପା ପାତ୍ରମାନରେ ବଇସମ ପଡ଼ିଲେ ପୂଜାପଣ୍ଡାମାନେ ପତ୍ରିବଡୁ ଦୁହେଂ ଦେବେ । ରଢୋପଚାର ସମଧର ...ପୂଜା ବଢ଼ିଲା ଉତାରେ ଭଣ୍ଡାରେ ପଇଠ କରିବ । ଏକାଦଶି ଦିନ ସଂଝଂ ଧୂପପୂଜା ଆଳତି ବଢ଼ିଲା ଉତ୍ତାରେ ବନ୍ଦାପନାକୁ ୩ ମାହାଦିପ ପଣ୍ଡାମାନଙ୍କଂ ହାଥକୁ ବଢ଼ାଇ ଦେବ ॥

**[99a] ଭିତର ଗରେଆବଡୁ ସେବା ୧୮**

ଏ ପାହାନ୍ତି ଅବକାସ ମୁଖପଖାଳ ପୂଜା ଆଦିକରି ପୁଷ୍ୟ ଆଞ୍ଜୁଂଳି ବିଢେ ପୂଜା ସରିକି ଢେତେ ପୂଜା ହୋଇବ, ପରବ ଢାତ୍ରାମାନରେ ଜେତେ ପୂଜାହୋଇବ ସବୁ ପୂଜାରେ ପାଣି ଝରି ଖଟିବ । ପୂଜା ବଢ଼ିଲା ଉତାରେ ଝରି ଭଣ୍ଡାରେ ପଇଠ କରିବ । ରଢା ଏ ପରିକ୍ଷା ପରମେଶ୍ୱରଙ୍କଂ ଦରସନ ନିମନ୍ତେ ସିଘାଂସନଠାକୁ ଗଲେ ନୋହିଲେ ପରବ ଢାତ୍ରାମାନ ନିମନ୍ତେ ସିଂଘାସନଠାକୁ ଗଲେ ଏ ପାଣି ଝରି ଖଟିବ । କଉଣିସି

ରଜା ଦିନରୁ ପୁଷ୍ୟ ଆଭୁଂଳୀ ବିଜେ ନାରାୟଣ ଦେବଙ୍କୁଂ ଅୟାମହାଜନ ସଙ୍ଗତେ ମିସିଂ ବିଜେ କରାଇଲା ଭୋଗ ମୁଣୋହି ସଂପୂର୍ଣ୍ଣେ ହଡ଼ପ ନାଏକ ତାହା କରିବ ।।

**ବାହାର ଗରେଆବଦୁ ସେବା ୧୯**

ଏ ରୋସୁଅ କୁଅରଂ ପାଣି ଆଣି ଗରେଆ ଘରେ ଥୋଇବ । ଲୁଗାରେ ଛାଣିବ । ଭଣ୍ଡାରୁ ଲବଙ୍ଗ ଜାଇଫଳ ଅଗରୁବାସ କରି ପାଣିଘସା ମାନରେ ପୁରାଇବ, ଧୂପ ଅବକାସ ଉପନଭୋଗ ମୁଣୋହି ବେଳେ ଘସାପାଣି ଖଟିବ । ଗମ୍ଭରା ମୁଣୋହି କୋଠା ଧୋପଖାଳମାନଙ୍କୁ ଜେତେ ପାଣି ଲାଗିବ ଖଟୀବ । ଦେବସ୍ନାନ ଯାତ୍ରା ଚନ୍ଦନ ପାଣି ଗୋଳି ଅଦିବାସ ଗରେଆ ମାନରେ ପୁରାଇ ଥୋଇବ ସ୍ନାନଯାତ୍ରା ଦିନର ଅଦିବାସ ହୋଇଥିଲା ଚନ୍ଦନ ପାଣି ଗରେଆମାନ ଅଦିବାସ ଶାଲାରଂ ତହିଂ ନେଇଂ ଅରୁଣ ଉଦୟ ସମୟେ ସ୍ନାନ ମଣ୍ଡପରେ ଛାମୁରେ ୩ ଠା କରି ବିଜେ କରାଇବ । ଶ୍ରୀଗୁଣ୍ଡିଚା ଜାତ୍ରା ରଥ ଉପରେ ଘସାବାସ ପାଣି ଖଟିବ । ଦେବସ୍ନାନଜାତ୍ରା ଶ୍ରୀଗୁଣ୍ଡିଚାଜାତ୍ରା ପହଣ୍ଡିବିଜେ ମାନରେ ଘସାବାସ ପାଣି ଘସାମାନ ଖଟିବ । ନିତିଆନି ଭୋଗ ମୁଣୋହିମାନରେ ଜେତେ ପାଣିଘସା ଉଠିବ, ଏ ପାଣିଘସାମାନ ତଲପ ପ୍ରମାଣେ ପରିଛା **[99b]** ପରକରଣ ସେବକମାନଙ୍କୁଂ ମଇଧ କରି ବଏଦେବ କୁମ୍ଭାର ନିଯୋଗ ବିଶେଇଂଠାରୁ ଘସା ପାଣି ହାଣ୍ଡି ଗଣମଣ କରି ଘେନିବ ।।

**ହଡ଼ପ ନାଏକ ସେବା ଭିଆଣ ୧୯**

ଏ ବିଶୋଇ ତହୁଁ ନିତିଆନି ଭିଆଣ ଗୁଆ ତୋଟାମାନରୁ ଗୁଆ ଗଣି ଘେନିବ । ମୁଗୁନି ଶିଳରେ କନାରେ ଛେଚି ଧୋଇବ । ଭଣ୍ଡାରଂ ଲବଙ୍ଗ ଜାଇଫଳ କପୁର ଭିଆଣ ପ୍ରମାଣେ ଘେନିବ । ପାନମଡ଼ି ଜୋଗଣିଆ ତହୁଁ ପାନ ଘେନି ଗୁଆଇତି ଜେତେ ଭିଆଣ ତେତେ ଗୁଆଇତି ବାନ୍ଧିବ । କପୁରବାସ ଗୁଆ ମଧ କରି ଭୋଗ ମୁଣୋହି ଉତାରେ ସୁନା ହଂପଡ଼ରେ ଗୁଆଇ ପଣ୍ଡା ହାଥକୁ ବଢ଼ାଇ ଦେବ । ବେହୋରଣେ ତଲପ ପ୍ରମାଣେ ରାଜଜୋଗଣ ପରିଛା ପରକରଣ ସେବକମାନଙ୍କୁଂ ମଇଧ କରି ଭିଆଣ ପ୍ରମାଣେ ବଏ ଦେବ । ପରବ ଜାତ୍ରାମାନରେ କପୂର ବିଡ଼ିଆ ଗୁଆ ଗୁଆଇତି ଖଟିବ ଏ ଦେବ ।।୦।।

**ବିଡ଼ିଆ ଜୋଗଣିଆ ସେବକ ସେବା ୧୯**

ଏ ପାନମଡ଼ି ଜୋଗଣିଆଠାରଂ ନିତିଆନି ଖଟଣୀକି ଜେତେ ପାନ ଏହା ଗଣି ଘେନି ଜେତେ ଧୂପ ଯେତେ ଉପନ ଭୋଗ ଜେତେ ଅବକାସ ସବୁବେଳେ ଭୋଗ ମୁଣୋହି ସଂପୂର୍ଣ୍ଣେ ବିଡ଼ିଆ ଲାଗି କରାଇବ । ପରବ ଯାତ୍ରାମାନରେ ବିଡ଼ିଆ ଲାଗି କରାଇବ ଭିଆଣ ପ୍ରମାଣେ ଏ ପାନ ପରିଛା ପରକରଣମାନଙ୍କୁଂ ବଏ ଦେବ ।।୦।।

## ପାନମଢ଼ି ଜୋଗଣିଆ ସେବା ୧୯

ଏ ପାନ ଆଗରମାରୁଂ ସାଚୀ ପାନ ନାଗରଖଣ୍ଡି ପାନ କଳିଜୋଡ଼ିଆ ପାନ ...ମାନର ଭିଆଣ ପାନ, ଏ ପାନ ମାନ ସବୁ ଗଣି ଘେନିବ । ନିତି ଆନି ପାନ **[100a]** ବାଛି କତୁରି ଘେନି କତୁରି ଧୋଇବ । ଜେଉଂ ଅବକାଶେ ଭୋଗମୁଣୋହି ଉତାରେ ଜେତେ ଭିଆଣ ସେ ପ୍ରମାଣେ ବିଡ଼ିଆ ଜୋଗଣିଆ ମୁଳେ ହଡ଼ପ ନାଏକ ମୁଳେ ଗଣମଣ କରିଦେବ ।।

**'ସୁଦୁସୁଆର'** ... ... ...

... ମୁଣୋହି କୋଠାଠାରଂ ଜଗମୋହନ ଦୁଆର ସରିକି ପଏରିବ । ପାହାନ୍ତି ଅବକାଶ ପଚାଂମୃତ ହୋଇବାକୁ ବିସୋଇଠାରୁ ପଚାଂମୃତ ଖଟିବ । ରୋସୁଅକୁ ମୁଂଗ ଭାଜିଦେବ । ସାରେଆ ବଗଡ଼ା ପରିବାମାନ କାଟି ତୁଉଣକୁ ଦେବ । ଜେଉଂ ଋତୁରେ ଜେଉଂ ଫଳମାନ ଆମ୍ବ ପଣ୍ସ ପାଚଲା କଦଳୀ (ମୁଣୋହୀ କୋଠାରୁ ଜଗମୋହନ ଦୁଆର ସରିକି) ନାନା ଫଳମାନ ମଧ କରି ଏହା ବାଛି ଧୋଇଂ ମୋଣୋହିକି ଦେବ । ଯାତ୍ରାମାନ ବନ୍ଦାପନାକୁ ପୂର୍ଣ୍ଣକୁମ୍ଭ ହଳଦିଆ ଚାଉଳ ଦୂବ ବରକୋଳିପତ୍ର ଆମ୍ବପତ୍ର ମଇଧ କରି ସରଘରୁ ଯାହା ଖଟିବାର ତାହା ସରଘରୁଂ ଖଟୀବ । ଭିଆଇଂ ଜାହା ଆଣିମାର ତାହା ଭିଆଇ ଆଣିବ । ଜାତ୍ରାମାନରେ ଜେତେ ପଚାଂମୃତ ତାହା ପରବ ଜାତ୍ରା ବିଶୋଇଠାରଂ ଆଣି ଖଟିବ । ଅଣସର ଯାତ୍ରାରେ ଟାଟୀ ଭିତରେ ଶ୍ରୀଅଙ୍ଗରେ ଓସୁଅଲାଗି ନିମନ୍ତେ ପରବଯାତ୍ରା ବିଶୋଇ ପଇଠର ସଜଳସ ଦେଉଳ ଢେଙ୍କିରେ କୁଟୀ ଛାଣି ଛଡ଼ା ତିଳ ମାଳପାରେ କପୁର ମିଶାଇଂ ସବୁ ... ସୁନାକପୋରାରେ ପୁରାଇଂ ଧୋବଲୁଗା ଘୋଡ଼ାଇଂ ଏ ବାଘମୁହାଂ ବାନ୍ଧି ବହିଆଣି ଟାଟିଦୁଆରେ ଦେଇତା ପଶୁପାଳକକୁ ଦେବ । ଜେତେ ଓସୁଅ ଦେଇତା ପଶୁପାଳକ ମାଗିବ ତେତେକ ଖଟିବ । ଅଣସର ଜାତ୍ରା ଦଶମି ଦିନ ରାତ୍ରେ ଶ୍ରୀଅଙ୍ଗେ ନେତପାଟ ଲାଗିକି ଦେଇତା ପଶୁପାଳକର ହୋଇଂ ଦେଉଳେ ଅଟକାଳି ରାନ୍ଧି ଟାଟି ଭିତରକୁ **[100b]** ଖଟୀବ । ଦୁଆଦଶି ଦିନର ଟାଟି ଭିତରଂ ଡ଼ୋରୋ ଚନ୍ଦନ ସହସ୍ର ଏମାନ ବାହାର ହୋଇଲା ଉତାରେ ଏ ଟାଟି ଭିତରେ ପସି ସବୁ ପଏଁରି ପାଣି ... ଦିନରାତ୍ରେ ଶ୍ରୀଅଙ୍ଗରେ ମଡ଼ିଆଳ ଲାଗିକି...ଖଟିବ । ଅଟକାଳି ଚାଉଳ ପରବଯାତ୍ରା ବିଶୋଇ ... ... ମୁଖ ବିରୂପ ଶ୍ରୀଅଙ୍ଗ ଲାଗିରୁ ପୁରୁଣା ନେତପାଟ ଜେତେକ ସବୁ ଲୁଗା ଲେଅଣକମ୍ପରେ ପୁରାଇଂ ଟାଟି ଭିତରଂ ବାହାର କରି ଏ ସଙ୍ଗତେ ବେହୋରଣ ଡ଼ଗରା ଜଗିଆ ଥାଇଂ ଦେଉଳ ଉତ୍ତର ଦିଗରେ ପାତାଳି କରି ବିଜେ କରାଇବ । ବନ୍ଦାପନାମାନକୁଂ ଭଣ୍ଡାରଂ ଧୂପ ସାତବତୀ ସୁନାକପୋରାରେ ନେଇ ଖଟୀ ବାହୁଡ଼ା କରିବ । କୃଷ୍ଣଜନ୍ମ ଯାତ୍ରା ବାମନଜନ୍ମ ଯାତ୍ରା ରାମଜନ୍ମ ଯାତ୍ରା ଏ ଜାତ୍ରାମାନରେ ଜନ୍ମଘର ଠାରେ ଦେବକୀ ଅଦିତି କଉଶଲା ଏମାନଙ୍କଂ ସଗଂତେ ଶୁଳନି

ପଣେ ଥିବ । ଜାନିଯାତ୍ରା ଭୋଗମାନରେ ପାଣି ପକାଇବ ତାଟି ଦୁଆର ପଣା ମୁଣୋହିଠାରେ ପାଣି ପକାଇବ ॥୦॥

**ବ୍ରାହ୍ମଣ କରଟିଆ ମୁଦୁଲି ସେବା ଭିଆଣ ୧୯**

ଏ ନିତି ଖଟଣି ଚନ୍ଦନ ଲାଗିକି ପରବଯାତ୍ରା ମାନରେ ଚନ୍ଦନଲାଗିକି ରାଜପ୍ରସାଦ ଚତୁସମକୁ ମଇଧ କରି ବାହାର ଦେଉଳୀ ଦେବତାମାନଙ୍କୁ ନିତିଆନି ବଏକୁ ମଧ କରି ଭଣ୍ଡାରଂ ଚନ୍ଦନ ଘେନି ଚନ୍ଦନ ଘସିବ । ଏ କାଠ ଚନ୍ଦନ ପଳ ୧୯ ଲୁଗା ଚିପୋଡ଼ା ସାରସା ଚନ୍ଦନ ପ୍ଳ୪ ଲେଖାଏ ତୁଳାଇଦେବ । କିଳା ଚନ୍ଦନ ଜେ ରହିବ ତାହା ତୁଳାଇଂ ଭଣ୍ଡାରେ ବାହୁଡ଼ା କରିବ । ସୁଗନ୍ଧ ଘଟୁଆରି ଏ ସରସା ଚନ୍ଦନେ କପୁର କସ୍ତୁରି ଗନ୍ଧ ଶିଳା କୁକୁଂମ ଅଗୁରୁ ପଡ଼ି ... ... **[101a]** ଏହାକୁ ସମସୁବର୍ଣ୍ଣ କପୋରାରେ ପୁରାଇଂ ଏ କରଟିଆ ମୁଦୁଲି ସିଂଘାସନଠାକୁ ନେଇଂ ବ୍ରାହ୍ମଣ ମେଇକାପ ହାଥେ ଦେବସ୍ନାନ ଯାତ୍ରା ବଢ଼ିଲା ଉତାରେ ପରମେଶ୍ୱରେ ବିଜେ କରି ଆସି ଅଣସର ଗମ୍ଭରାରେ ବିଜେକଲା ଉତାରେ ଅଦରସନୀଅ ନିମିତେଂ ଶ୍ରୀମୁଖ ... ...ମାନେ ସେବା ଖଟିବାବେଳକୁ ମକର ଯାତ୍ରାରେ ପରିକ୍ଷା ପରକରଣମାନଙ୍କୁ ମଇଧ୍ୟ କରି ପରିକ୍ଷା ବୋଲ ପ୍ରମାଣେ ଭଣ୍ଡାରଂ ଅଣସର ଚନ୍ଦନ ଆଣି ବାଟି ସମସ୍ତଙ୍କୁ ଚନ୍ଦନ ଦେବ ଚନ୍ଦନଯାତ୍ରା ୪୦ ଦିନ ଆଲଟ ଲାଗି ସଂପୂର୍ଣ୍ଣେ । ବଡ଼ରାଏ ନୃସିଂଘଦେବ ରଜାକଂ ରାଇଜେ... ଦିଗ୍‌ବିଜେ କରି ଆସି ପରମେଶ୍ୱରକଂ ବାଡ଼ରେ ସଜଂଧୁପ ବେଳେ ଜୟ ମଙ୍ଗଳ ଆଳତି ଦେଲାକୁ ଭିଆଣ ସେବକ ଜ୨ ଏ ସଂଜଂଧୁପରେ ଜଏ ମଙ୍ଗଳ ଆଳତି ଖଟୀବ ॥୦॥

**ପ୍ରସାଦବଡୁ ସେବାକୁ ୧୯**

ଏ ସକାଳଧୁପ ଭୋଗ ମୁଣୋହି ରାଜଜୋଗ ... ମହାପ୍ରସାଦ ମାହାସୁଆରଠାରଂ ଗଣମଣ କରି ଘେନି ଲୁଗାଲେଅଣ ତାଟରେ ପୁରାଇଂ ଏ ତାଟ ଉପରେ ମାହାସୁଆର ହାଥ ଲକ୍ଷ୍ମିମୁଦି ବାହାରେ ମୁଦଦେଆଇଂ ଏ ଉପରେ ଛତି ଗୋଟାଏ ଘୋଡ଼ାଇଂ ଏ ତାଟ ବହିଂନେଇଂ ରାଜକଟକେ ଶ୍ରୀନଅରୁ ମଡ଼ଫୁଲି ଘର ପିରିଛା ମୁଳେ... ଦେବ । ଏ ତାଟ ନିତୀ ଦିନ ପଇଠି ହୋଉଥିବାକୁ ... ଖଞ୍ଜା କରୁଥିବ । ନାନା ପରବ ଯାତ୍ରାରେ ଭୋଗ ମୁଣୋହିକି...ଜୋଗଣିଆ...ପ୍ରସାଦ (ଚନ୍ଦନେ) ଗୃହୁଂ ନେଇ ପଇଠି କରିବ । ରାମଜନ୍ମ ଯାତ୍ରା କୃଷ୍ଣଜନ୍ମ ଯାତ୍ରା ବାବନଜନ୍ମ ଯାତ୍ରା ଏ ଜାତ୍ରାମାନର ଓଖର ମୁଣୋହି ବଢ଼ିଲା ... **[101b]** ... କରିବ ।

**ଫୁଲବଡୁ ସେବାକୁ ୧୯**

ତିନି ଧୁପରେ ପୂଜା ବଢ଼ିଲା ଉତାରେ ପଣ୍ଡାମାନର ଆସଂସାଚାଳ ଧୁପ ରାଜପ୍ରସାଦ ଫୁଲ ଧଣ୍ଡୀ ଚତୁସମ ଏହା ତୋଳାମୁଣିରେ ମୁଦପଡ଼ି ଏ ପ୍ରସାଦ ... ...କଟକେ ଶ୍ରୀନବରେ

ଦେବାର୍ଚନ ନଅରେ ପ୍ରବେଶ କରିବ, ପର୍ବ ଯାତ୍ରାମାନରେ ଜେତେ ରାଜପ୍ରସାଦ ପତନି ଖଦି ଦଏଣା ଧଣ୍ଡୀ ଫୁଲ ଧଣ୍ଡି ଚତୁସମ ଦୁବାଅଙ୍କୁର ବିରବର ବାନା ଏ ମାନତୋଳା ମୁଣିରେ ପୁରାଇଂ ମୁଦଦେଇଂ ପାରୁଳି କରେ ଆରେ କରି ବାନ୍ଧି କାନ୍ଧରେ ବହି ନବରେ ପଇଠ କରିବ । ଦୋଳଯାତ୍ରା ରାଜପ୍ରସାଦ ଫଗୁ ନେବ, ଅପରାଜିତା ଚିତ୍ରପଟ ନେବ ॥୦॥

### ବିମାନବଡୁ ସେବକ ସେବା ୧୯

ଏ ନିତିଆନି ଧୂପ ବଢ଼ୀଲା ଉତାରେ ଧୂପକେ ତିନି ବେଳ ଲେଖାଏ ପ୍ରତିଅରଂଚାଂ ଦେବତାକୁଂ ବିମାନେ ବିଜେ କରିଥିବା ଦେବତାକୁଂ ବହି ପ୍ରାସାଦ ବେଢ଼ା ବୁଲାଇବ । ପରବ ଯାତ୍ରା ମାନରେଂ ବିଜେ ଦେବତା ମାନ ବିମାନେ ବହି ବେଢ଼ା ବୁଲାଇବ ॥୦॥

### ହାନ୍ଦୋଳାବଡୁ ସେବକ ସେବା ୧୯

ଏ ପରବଯାତ୍ରାମାନରେ ମାହାଲକ୍ଷ୍ମୀ ଠାକୁରାଣିକଂ, ଅସିଣ ମାସେ ଦେବି ପର୍ବରେ ଦୁର୍ଗାବେଦିକଂର ମଧ ହୋଇଂ ହାନ୍ଦୋଳା ବହିନେବ, ... ମକର ଯାତ୍ରା ନଅରକୁ ମକର ଚାଉଳ ଭାତ ପିଠା ଦୋଳଯାତ୍ରା ପ୍ରସାଦ କେତକି ସୁଆକସି ଆମ୍ବ ଆମ୍ବବଉଳ ଏମାନ ଉଳାଗିର ବାଉଂସିଆମାନରେ କରି ବହିନେବ, ନଅର ବିକୁହା ...ଏମାନ ନେବ । ସ୍ନାନଯାତ୍ରା ଚନ୍ଦନ ପାଣି ଭାର କରି ସୁନାଗରେଆରେ ନେବ ...। **[102a]** ତାରୁଲାଟ ଲେଖୁଆଟମାନ ନେମ ଅକଂ ଆଗଚଲା ପ୍ରଥମାଷ୍ଟମି ଆଗଚଲାରୁ ବଇଜୟନ୍ତୀମାଳା ମଣ୍ଡାଚୁଳ ଫୁଲ ଚାନ୍ଦୋଆ ମଣ୍ଡଣି ଫୁଲ ମଇଧ କରି ବହିନେମ ॥୦॥

... ପ୍ରତାପଦେବ ରଜାକଂ ରାଇଜରୁ ଅଧିକ ଭିଆଣ ପାହାନ୍ତି ଅବକାଶେ ... ଖଟିବ ଆଗ୍ୟାଂ ପ୍ରମାଣେ ଅମ୍ବଷ୍ଟ ସେଣାମାହାପାତ୍ର ପୋଅ ଜଗନ୍ନାଥ ସେଣମହାପାତ୍ର ଜ୧୯ ଏ କୋଠରଂ ଦେସପାଇଁ ମହାସୁଗନ୍ଧି ତଇଳ ରୁଜୁ କରି ଭଣ୍ଡାରୁ ସୁନା ଦିଉଡ଼ି ଘେନି ପାହାନ୍ତି ଅବକାସେ ଭିତରେ ଦିଉଡ଼ି ଧରି ... ଜାତ୍ରା ରାତି ପହଣ୍ଡିବିଜେ ବେଳେ ଦିଉଡ଼ି ଧରି ଶ୍ରୀଗୁଣ୍ଡିଚା ଜାତ୍ରା ରାତି ପହଣ୍ଡିବିଜେ ବେଳେ ଦିଉଡ଼ି ଧରିବ ରାତ୍ରେ ନନ୍ଦିଘୋଷ ରଥରେ ଦିଉଡ଼ି ଧରିବ ॥୦॥

### ଦରପଣିଆ ସେବକ ସେବା ୧୯

ଏ ତିନି ଧୂପ ଜଗନ୍ନାଥ ବଲ୍ଲଭ ଅବକାଶ ବଡ଼ ସିଂହାର ଅବକାଶ ଗାଏ ଏତେ ଅବକାଶରେ ସୁନାବେଣ୍ଟିଆ କଂସା ... ଦରପଣ ଭଣ୍ଡାରଘର ଦୁଆର ଅରଗଳଠାରେ ତିନି ଦରପଣ ଛାମୁରେ ଧରିବେ, ପାହାନ୍ତି ଅବକାଶ ବେଳେ ଭିତର କଳାପାଆଛଠାରେ ଦରପଣ ଧରିବ । ଏତେ ଅବକାଶେ ବେଶ ବଢ଼ିବା ଯାଏ ଦରପଣ ଧରିବ, ନାନା ପରବ ଯାତ୍ରାମାନରେ ଛାମୁରେ ଦରପଣ ଖଟିବ । ଦେବସ୍ନାନ ଯାତ୍ରା ଶ୍ରୀଗୁଣ୍ଡିଚା ଯାତ୍ରା ଦୁଇ ବିଜୟରେ ମଧ କରି ପହଣ୍ଡିବିଜୟ ବେଳରେ ଉପର ପାଆଛମାନକୁଂ ବିଜେ କରି ଯିବାକୁ

ତ୍ରିମୁଣ୍ଡି ସେହ୍ନାପଟାରେ ଲଗାଇ ବିଜେ କରାଇବାକୁ ପେଣ୍ଡ ଭିଆଣ ଘେନି ମାଠ ଦୁଇଗୋଟୀ ବିଜେ ସଂଗତେ ଥିବ । ଦେବ... **[102b]** ... ତଡ଼ପ ମୁହଁରେ ଅଳତା ଘେନି ଲିହିବ । ପନିଅର ଲାଗି ସେବା ଖଟୀବ । ଏ ମାହାରାଜାକଂର ଭିଆଣ ନାହିଁ କଉଣସି ରଜା ଦିନରୁ ଦେଇତାପତି ବୋଲ ପ୍ରମାଣେ ପହଣ୍ଡିବିଜେ ବେଳକୁ ସିଂଘାସନ ଆଡ଼ରେ ଥାଇଂ ଅନ୍ଧଣା ... ।

**ପୁରାଣ ପଣ୍ଡା ସେବକ ସେବା ୧୯**

ଏ ତିନି ଧୁପ ବଡ଼ସିଂଘାର ଅବକାସ ଭୋଗମୋଣୋହି ଧୁପ ଦିପ ଦେଇଂ ଟେରା ଫିଟିଲା ଉତାରେ ଭିତର କଳାପାବଛ ଉପରେ ବସି ପୁରାଣ ପଢ଼ିବ । ବଲ୍ଲଭ ଭୋଗ ମଣୋହି କୋଠାରେ ମୋଣୋହିବେଳେ ଧୁପଦୀପ ଉତାରେ ଟେରା ପଡ଼ିବା ଉତାରେ ଜଗମୋହନ ଦୁଆର କଳାପାଆଛଠାରେ ବ୍ସି ପୁରାଣ ପଢ଼ିବ । ଭୋଗମୋଣୋହି ସଂପୂର୍ଣ୍ଣେ ଟେରା ତୋଳିଲା ଉତାରେ ପୁରାଣ ପଢ଼ିବ ।।୦।।

**ଧ୍ୱଜଧରା ସେବା ୧୯**

ଏ ତିନି ଧୁପବେଳେ ଗରୁଡ଼ଧ୍ୱଜ ତାଳଧ୍ୱଜ ପଦ୍ମଧ୍ୱଜ ଏ ତିନିଧ୍ୱଜ ମୁଣୋହି କୋଠା ଅରଗଳିଠାରେ ଧରିବ । ପୁଜା ବଢ଼ିଲା ଉତାରେ ଏ ଧ୍ୱଜମାନ ବାହାର ଭଣ୍ଡାରେ ବାହୁଡ଼ା କରିବ ।।୦।।

**ସୁନା ଚନ୍ଦ୍ରସୂର୍ଯ କଳାପାଟ ତରାସ ସେବକ ସେବା ୧୯**

ଏ ତିନି ଧୁପବେଳେ ଜଗମୋହନ ଦୁଆରଠାରେ ତରାସ ଧରିବ । ନାନା ପରବ ଜାତ୍ରାମାନରେ ତରାସ ଧରିବ । ଜାତ୍ରା ବଢ଼ିଲା ଉତାରେ ଭଣ୍ଡାରେ ତରାସ ବାହୁଡ଼ା କରିବ ।।

**ଉପଚାର ଚଅଂର ସେବା ୧୯**

ଏ ତିନି ଧୁପ ମୁଣୋହିବେଳେ ମୁଣୋହି କୋଠା ଠାରେ ସୁନା ବେଣ୍ଟିଆ ଚଅଂର ତିନି ଗୋଟୀ ଖଟୀବ । ଧୁପ ବଢ଼ିଲେ ଭଣ୍ଡାରେ ବାହୁଡ଼ା କରିବ । ମକର ଯାତ୍ରା **[103a]** ଆଦୀକରି ନାନା ପରବ ଯାତ୍ରା ମାନରେ ଚଅଂର ଖଟୀ ବାହୁଡ଼ା କରିବ ।।

**ରନ୍ ଆଲଟ ସେବକ ସେବା ୧୯**

ଏ ତିନି ଧୁପବେଳେ ଜଗନ୍ନାଥ ବଲ୍ଲଭ ଅବକାଶ ବଡ଼ସିଂହାର ଅବକାଶ ପୁଷ୍ପଆଞ୍ଜୁଂଳି ବିଜେବେଳେ ନିତିଆନି ଆଲଟ ମୁଣୋହି କୋଠାଠାରେ ଖଟୀବ, ଗ୍ରୀଷ୍ମ ରତୁରେ ସିଂଘାସନ ତଳେ ଥାଇଂ ଶ୍ରୀଅଙ୍ଗ ନିକଟେ ଖଟୀବ । ନାନା ପରବ ଯାତ୍ରା ମାନରେ ଆଲଟ ଖଟିବ ।।୦।।

## ସୁନାବେତ ସେବକ ସେବା ୧୯

(ଏ ପାହାନ୍ତି ଅବକାଶବେଳେ) ଏ ତିନିଧୁପବେଳେ ଅବକାଶ ମାନରେ ମୁଣୋହି କୋଠାଠାରେ ରନ୍‌ବେତ ଖଟୀବ। ପରବ ଯାତ୍ରାମାନରେ ଖଟୀବ। ଜାତ୍ରା ବଢ଼ିଲା ଉତାରେ ଭଣ୍ଡାରରେ ବାହୁଡ଼ା କରିବ ॥

## ଖଦି ବିଂଚିବା ସେବକ ସେବା ୧୯

ଏ ତିନି ଧୁପ ଦୁଇ ଅବକାଶବେଳେ ଭୀତର କଳାପାବଛଠାରେ ଥାଇଂ ଖଦି ଖଟିବ। ପୁଷ୍ପ ଆଳୁଂଳି ବିଜେବେଳେ ଖଟୀବ। ନାନା ପରବ ଜାତ୍ରାମାନରେ ଖଟୀବ। ଶେବା ନିବୋଲଣା କରି ଖଟିସାରି ଚାଂଗଡ଼ା ଘରେ ଖଦି ବାହୁଡ଼ା କରିବ।

## ସୁନା ଦିଉଡ଼ି ସେବକ ସେବା ୧୯

ଏ ପାହାନ୍ତି ଅବକାଶବେଳେ ଭିତର କଳାପାଆଛଠାରେ ଦିଉଡ଼ି ଧରିବ। ପୁଷ୍ପ ଆଳୁଂଳି ବିଜେବେଳେ ଦିଉଡ଼ି ଧରିବ। ଦୋଳଯାତ୍ରାରେ ଦେବସ୍ନାନ ଯାତ୍ରା ଶ୍ରୀଚୁଣ୍ଡିଚା ଯାତ୍ରା ଗୁରୁବାର ଏକାଦଶି ଅବିଷେକ ଯାତ୍ରା ଏ ରାତ୍ରମାନରେ ଛାମୁରେ ଦିଉଡ଼ୀ ଧରିବ। ନାନ ପରବ ଯାତ୍ରାମାନରେ ଦିଉଡୀ ଧରିବ। ଅଣସର ଜାତ୍ରାରେ ଦ୍ୱାଦଶି ଦିନ ଆଦ୍ୟୁଂ ମଡ଼ିଆଳ ଲାଗିଠାରଂ ନେତ୍ର ଉଛବ ଯାତ୍ରା ସରିକି ତାଟି ଭିତରେ ଦିଉଡ଼ୀ ଧରିବ ॥୦॥

## [103b] ଭିତର ବଢ଼ା ସେବକ ସେବାକୁ

ଏହାର ସେବା ଭାତ ବାହାରେ ଖିରି ପିଠା ପଣା ଗୋଟୀକା ବସାଦହି ଦୁଧ ତିଉଣ ... ମଧ କରି ମୁଣୋହିରେ ଜେତେକ ରହିଥିବ। ଏହାସବୁ ମାହାସୁଆରଠାରୁ ଗଣମଣ କରି ଘେନିବ। ଏଥୁଂ ଜେଉଂ ସେବକ ଜେତେକ ପାଇଥିବ ଏ ବାହାରେ ବୋହୋରଣେ ଜେତେକ ବଏ ହୋଇଥିବ ଏହାସବୁ ବଏ ଦେଇଂ ପ୍ରକରଣକୁ ବୁଝାଇବ, ଠାକୁରେ ଶ୍ରୀପୁରୁଷୋତ୍ତମେ ବିଜେ କରିଥିଲେ ପରବ ଯାତ୍ରାମାନରେ ଜେତେ ମାହାପ୍ରସାଦମାନ ସବୁ ଶ୍ରୀନଅରକୁ ପଶ୍ଚିମଦ୍ୱାର ସାଆନ୍ତମାନକୁଂ ଭଟମିଶ୍ର ବ୍ରାହ୍ମଣମାନକୁଂ ପରକରଣମାନକୁଂ ବହି ନେଇଂ ଦେବ। ନିତ୍ୟାନି ପରିକ୍ଷାର ନିତ୍ୟାନି ମାହାପ୍ରସାଦ ବହି ପରିକ୍ଷାର ନେଇଂ ଦେବ। ପରିକ୍ଷା ଯାହାକୁ ମାହାପ୍ରସାଦ ଦେଆଇବ, ବହି ନେଇଂ ତାହାକୁ ମାହାପ୍ରସାଦ ଦେବ ॥

## ଭୋଗମୁଣୋହିଠାରେ ମୁରୁଜଦେବା ସେବା ୧୯

ପାହାନ୍ତି ଶ୍ରୀମୁଖପଖାଳ ପୂଜା ସେବା ତିନି ଧୁପ ତିନି ଉପନଭୋଗ ଦହିକଡ଼ମା ଭୋଗ ବଡ଼ସିଂଘାର ଭୋଗ ବଲଭ ଭୋଗ ପୁଷ୍ପାଞ୍ଜଳି ବିଜେ ଭୋଗ ପରବ ଜାତ୍ରାମାନରେ ଭୋଗ ମଣୋହିଠାରେ ମଇଧ କରି ଏତେ ଠାରେ ପନ୍ତିମୁଳେ ସରଘରୁ ଚାଉଳ ଚୁନା ଘେନି ମୁରୁଜ ଦେବ ॥୦॥

**ଘିଅପରସା ସେବକ ସେବା ୧୯**

ଏ ସରଘର ମେଇକାପଠାରଂ ଘିଅ ମାଗିଂ ଘେନି ଏ ଘିଅରେ ... ...ସି ପାନପାତ୍ର ପକାଇଂ ଏ ଘିଅ ତତାଇଂ ସୁବାସ କରି ମୁଣୋହୀ ଠାବରଂ କୁଢ଼ ଭାତରେ ହାଣ୍ଡି ଭାତରେ ଅଭଡ଼ା ଭାତରେ ମଧ କରି ଘିଅ ପରସିବ। ପନ୍ତିରେ ଘିଅ କୁଡୁକି ବସାଇବ ।।୦।।

**ବ୍ରାହ୍ମଣ ସମରଥା ସେବକ ସେବା ୧୯**

ଏ ସମରଥା ଥାଳିରେ ବିରି ଚାଉଳ ମୁଗ ଛେନା ପାଚିଲା ଅମୃତ **[104a]** ... ...ମାନ ବାଟ ଘସକରି ସୁଆରକୁ ଦେବ । ଜେଉଂ ପିଠାକୁ ଜେଉଂ ତିଉଣକୁ ଜେତେ ଘେନି ଦେଇ ଯୋଗାଇ ସେ ପ୍ରକାରେ ସୁଆରକୁ ଦେବ । ପରବ ଯାତ୍ରା ଭୋଗ ଆଡ଼ତିମାନ ନିବୋଲଣା କରିବ ।।

**ଶୁଦ୍ର ସମରଥା ସେବକ ସେବା ୧୯**

ଏ ରୋସେ ଚୁନା କୁଟୀବ, ମଣ୍ଡପରେ ଚୁନା କୁଟୀବ, ବିରିମୁଗ ରଗଡ଼ିବ, ହଳଦି ବେଶ୍ୱର ବାଟିବ । ପରବ ଯାତ୍ରା ଭୋଗମାନରେ ଏ ଆଡ଼ତୀମାନ ଖଟୀ ନିବୋଲଗା କରିବ ।।୦।।

**ରୋସ ସରଘର ସେବକ ସେବା ୧**

ଭିଆଣ ନିଯୋଗ ବିଶେଇଠାରୁ ବେହୋରଣେ ତୁଳମୁଳ କରି ଘେନାଣ ଘିଅ ଗୁଡ଼ ଖଣ୍ଡ ଛେନା ବିରି ମୁଗ ଖରଡ଼ା ଲୁଣ ସୋରିସ ହଳଦି ଆମ୍ବୁଲ ତେନ୍ତୁଳୀ ସାରେଆ ବଗଡ଼ା ପରିବା ଅଦା ପାଚଲୀ କଦଳି ନଡ଼ିଆ ପଇଡ଼ ହିଙ୍ଗୁ ଜିରା ମରିଚ ମେଥି ଲବଙ୍ଗ ଜାଇଫଳ ଅଳାଇଚ କପୁର ମଧ କରି ନାନା ପଦାର୍ଥମାନ ସବୁ ସରଘରେ ସାଇତିବ । ଭୋଗମାନକୁଂ ଜେଉଂ ଭୋଗକୁ ଜେ ଲୋଡ଼ା ତାହା ତୁଳ ତାଳ କରି ରୋସୋସିଷ୍ଟ ପରିମୁଖେ ଦେବ । ଭୋଗରାଗମାନକୁଂ ଜେତେ ଗନ୍ଧିଅଣ ସରକ ଲାଗିବ ସବୁ ରୋସୋଶିଷ୍ଟ ଆଗେ ବାଟ ଘସ କରି ରୋସକୁ ଦେବ । ଧାନ ଘର ସିଠି କରଣଠାରୁ ଚାଉଳ ମାପି ଘେନି ଭୋଗରାଗ ନାନା ଆଡ଼ତି ଭିଆଣ ପ୍ରମାଣେ ବଏ ଦେବ ଭୋଗ ପଡ଼ିଆମାନର କପୁର ମୁଖ୍ୟକରି ଜେତେ ଗନ୍ଧିଅଣ ପଦାର୍ଥମାନ ରହିବ ତାହା ସବୁ ତଳିକ୍ଷୋ ବେହୋରଣେ ତୁଳ ପଳ କରି ଭଣ୍ଡାରେ ପଇଠି କରିବ । ଏହା ମୁଳେ ଘିଅ ମପାକୁ ଚାଉଳ ମାପଚୁପ କରି ଚକରିଆ ଅଢ଼ାମାଣିକା ଗନ୍ଧିଅଣ ତୁଳା ନିକିତୀ କଛ ଥିବ । ସରଘରୁ ବାହାର ହୋଇ ଜିବାବେଳକୁ ରୋସ ପାଇକକୁ ଝଡ଼ାସୋଧା **[104b]** ଥୋଇଂ ଛିବ । ରାତ୍ରେ ସରଘର ରୋସୋସିଷ୍ଟ ମୁଦିରେ ମୁଦ ଦେଆଇ ଜଗିଂ ସୋଇବ ।।୦।।

**କୁଆଅଡ଼ା ସେବକ ସେବା ୧**

ସକାଳଧୂପଠାରୁଂ ସଙ୍ଗଂଧୂପ ସରିକି ରୋସରୁ ଯେତେ ଭାତ ତିଉଣ ଖିରି ପିଠା ପଣା ଭୋଗ ମୁଣୋହିକି ଆସିବ, ପର୍ବଯାତ୍ରାମାନ ଭୋଗ ମଧ କରି ଏ ସଗଂତେ ବେତ ଘେନି କୁଆ ଅଡ଼ାଇବ ॥୦॥

**ତୋଳାବଟି ସେବକ ସେବା ୧୯**

ଏ ସଝଂଧୂପଠାରୁ ପୁଷ୍ପାଞ୍ଜଳି ସରିକି ଜେତେ ଭୋଗ ରୋସଅରୁଂ ମୁଣୋହିକି ଆସିବ ଏ ସଙ୍ଗତେ ରୋସ ସରଘରୁ ଘିଅବଇଠା ଘେନି ଦେଉଳ ଦୁଆରେ ଛାଡ଼ି ଯିବ ॥୦॥

**ରୋସଦୁଆର ଜଗିଆ ବ୍ରାହ୍ମଣ ପାଇକ ସେବକ ସେବା ୧୯**

ଏ ରୋସ ଦୁଆର ଜଗିଥିବ, ସୁଆର ମହାସୁଆରମାନକଠାରୁ ଝଡ଼ାସୋଧା ଘେନି ବାହାରକୁ ଛାଡ଼ିବ । ଜେଉଂ ସେବକର ଜେତେ ହାଣ୍ଡି ଭିଆଣ ପ୍ରମାଣେ ବରତ ବସାଣ ସେବାରେ ଜେ ଥିବ ତାହା ନେମା ବାହାରେ ଆଉ ପଦାର୍ଥେ ନ ଛାଡ଼ିବ । ପାହାନ୍ତି ଝୋଲା ଲାଗିବାଠାରଂ ପୁଷ୍ପାଞ୍ଜଳି ସରିକି ରୋସୋ ଦୁଆର ଜଗିଥିବ । ରୋସରୁ ସେବକ ଚୋରିହାରି କରିନେଲେ ଏହା ପରିକ୍ଷାକୁ ଗ୍ୟାତା କରିବ ॥

**ରୋସ ସରଘର ଜଗିଆ ଶୁଦ୍ର ପାଇକ ସେବକ ସେବା ୧୯**

ଏ ରାତ୍ର ଦିବସ ସର ଘର ଦୁଆର ଜଗିଥିବ । ମେଇକାପକୁ ସୋଧା ଘେନି ବାହାରକୁ ଛାଡ଼ିବ । ରାତ୍ର ସରଘର ଦୁଆର ମୁଦ ପଡ଼ିଲା ଉତାରେ ଜଗି ଶୋଇବ । ଚୋରି ବଇସମ ସେବକ କଲେ ପରିକ୍ଷାକୁ ଗ୍ୟାଂତା କରିବ ।

**[105a] ରୋସ ଅଂଗାରଆ ସେବକ ସେବା ୧୯**

ଏହାର ସେବା ପୁଷ୍ପାଞ୍ଜଳି ବଢ଼ିଲା ଉତାରେ ରୋସୋଖନ୍ଦା ଲିଭିଲା ଉତାରେ ଜେତେ ଖାର ଅଂଗାର ଚୁଲିମାନରେ ଥିବ ଏହା ସବୁ ପାଣିପକାଇ ବାହାର କରିବ ॥୦॥

**ରୋସଘର ଧୋପଖାଳିଆ ସେବକ ସେବା ୧୯**

ଏ ରାତ୍ର ବଡ଼ସିଂଘାର ବଲଭ ଭୋଗ ରନ୍ଧା ବଢ଼ିଲା ଉତାରେ ଭାତ ରାନ୍ଧି ରୋସଅ ତିଉଣ ରାନ୍ଧି ରୋସୋଅ ଖିରି ରାନ୍ଧି ରୋସୋଅ ପିଠା ରୋସୋ ମଧକରି ସବୁଠାରେ ପାଣିପକାଇ ପଏରାଦେବ, ଭାତ ପିଠା ତିଉଣ ଜେଉଁମାନ ପଡ଼ିଥିବ ତାହାସବୁ ବାହାର କରି ରୋସୋ ପାଇକ ପରିମୁଖେ ନେଇ ପୋତି ପକାଇବ ॥୦॥

**ବାହାର ଭଣ୍ଡାର ମେଇକାପ ସେବକ ସେବା ୧୯**

ଏ ପିତଳ ଗରେଆ ନାଳୋଆ ବଟ ଲୋହି ପଇଲମ କୁଣ୍ଡକୁ ଡୁକାପୋରା କଂସା ଦରପଣ ରଥ ମଣ୍ଡଣି ଚାନ୍ଦି ଦରପଣ ଚଂଅର ଚାନ୍ଦୋଆ କୁସୁମି ମଇଧ କରି ମଣ୍ଡଣି ସଜ ପିତଳ ବିମଳ କୋଲୁହ ଫିରିଫିରା ଲୁଗା ବାଡ଼ ମାନ ଛତା ରୋସ ନେତ ଉଲାର ମଧ କରି ସବୁ ଗଣମଣ କରି ସାଇତିବ । ଖଟଣି ସେବକମାନଙ୍କୁଂ ଜେ ଜାହା ସେବାବେଳକୁ ଦେଇ ଥାଇ ମଣି ଘେନିବ ।।୦।।

**ପାଆଡ଼ାଘର ମେଇକାପ ସେବକ ସେବା ୧୯**

ଏ ପେଣ୍ଡ ଭିଆଣ ଭୋଗ ପାଆଡ଼ ଚମଡ଼ି ଲୁଗାମାନ ବେହୋରଣୁ ମଣି ଘେନିମ । ସୀଲ୍ଲ ଭୋଗ ନଅ ସିଂଘାର ଭୋଗ ମଣୋହିବେଳକୁ ପାଆଡ଼ ଲୁଗା ସୁଆର ବଡୁ ମୁଳେ ଦେବ । ଭୋଗ ମୁଣୋହି ସଂପୂର୍ଣ୍ଣେ ଲୁଗାମଣି ଘେନିବ । ଦିନକୁ ଦିନ ଧୋବ ଲୁଗା ମହାସେଠିଠାରୁଂ ଗଣମଣ କରି ଘେନିବ । ପରବଯାତ୍ରା ଭୋଗ ମୁଣୋହି ବେଳକୁ ପାଆଡ଼ ଲୁଗା ଖଟିବ । ଗନ୍ତାବାହୁଡ଼ାବେଳେ ଏହା ଓ ଆଉ ଲୁଗା ବେହୋ**[105b]**ରଣେ ବାହୁଡ଼ା କରିଦେଇଂ ନୂଆ ପାଆଡ଼ ଲୁଗା ଗଣମଣ କରି ଘେନିବ ।

ଏ ପାଆଡ଼ ଲୁଗାର ପାଟ ୧୯ ଲମ୍ବ ହା୪ ଓସାର ହା୨ ଲେ. ଏ ପନ୍ତିକେ ଦୁଇପଟ ଲେଖାଏ ପାଡ଼ିବାକୁ ଦେବ ।

**ଦ୍ୱାର ନାଏକ ସେବକ ସେବା ୧୯**

ଏ ତିନି ଧୁପ ତିନି ଉପନଭୋଗ ଜଗନ୍ନାଥ ବଲଭ ଅବକାଶ ବଡ଼ ସିଘାଂର ଭୋଗ ମଧ କରି ମଣୋହି ବେଳେ ଭିତର କଳା ପାଆଛଠାରେ ଜଗିଥିବ । ଭୋଗମୁଣୋହି ସଂପୂର୍ଣ୍ଣେ ପରିକ୍ଷାକୁ ଗ୍ୟାଂତା କରି ପରିକ୍ଷା ବୋଇଲେ ଭୋଗ ଛାଡ଼ିବ । ଭୋଗରୁ ଦେଉଳ ବଏ ହୋଇବାକୁ ଭାତ ପିଠା ବଏ ହୋଇବାକୁ ରହିଲେ ପରିକ୍ଷା ବୋଲ ପ୍ରମାଣେ ଆସି ପନ୍ତିବଡୁ ଭିତର ବଡ଼ାକୁ କହି ଭାତପିଠା ରୁହାଇବ ।।୦।।

**ଛତା ସେବକ ନିଯୋଗ ସେବା ୧୯**

ଏ ତିନି ଧୁପରେ ଉପନଭୋଗ ମୁଣୋହିବେଳେ ଜଗମୋହନ ଦ୍ୱାରେ ମେଘଡ଼ମ୍ବର ଛତା ଧରିବ । ପରବଯାତ୍ରାମାନରେ ମେଘାଡ଼ମ୍ବର ବୀରଛତି କଳାକନାଟି ନେତ ଉଲାର ସବୁଛତା ଖଟିବ । ପୁଷ୍ୟାଅବିଷେକ ଯାତ୍ରାରେ ସିଂଘାସନ ତଳେ ବୀରଛତି ଖଟିବ । ଯାତ୍ରାମାନରେ ରାଜପ୍ରସାଦ ସଗଂତେ ନେତ ଉଲାର ଧରି ରାଜକଟକ ଯିବ । ଏଥକୁ ସୁର୍ଯ୍ୟ ବଂସ ଦିନୁ ବୀରଛତା ସେବା ମାହୁନ୍ତ ଦୁରୁଭାର ରାଏଙ୍କୁଂ ଦେଲେ ।

## ଅୟାମହାଜନ ସେବକ ସେବା ୧୯

ଏ ସୁନାରୂପା ପିତଳ ଦେବତାମାନଙ୍କୁଂ ମାଜଣାକରିବ ତଢ଼ାଉ ଲାଗି କରିବ, ନାନା ବେଶମାନ କରିବ । ପୁଷ୍ପ ଆଂଙ୍ଗୁଳି ବିଜେରେ ଅର୍ଦ୍ଧନାରି ନାରାୟଣ ଦେବଙ୍କୁ ହାଥରେ ଧରି ଜଗମୋହନ ଦୁଆରରେଂ ପାଟଡ଼ଉଁରଆ ଉପରେ ବିଜେ କରାଇବ । ଏଠାରେ ସିଂଗାର ସିତଳ ଭୋଗ ମୋ[106a]ଣୋହି ଉତାରେ ବନ୍ଦାପନା ବଢ଼ିଲା ଉତାରେ ଭିତରକୁ ବିଜେ କରାଇ ଆଣି ଦେଅଙ୍କୁଂ ଭଣ୍ଡାର ଘରେ ବିଜେ କରାଇବ । ପରବ ଯାତ୍ରାମାନରେ ଜେଉଁ ଯାତ୍ରାରେ ଜେଉଁ ଦେବତା ଏହାକୁଂ ଜଗତିରଂ ବିଜେ କରାଇ ଆଣି ପରମେଶ୍ୱରଙ୍କ ଶ୍ରୀଅଗଂରଂ ଆଗ୍ୟାଂମାଳ ଦେଇ ଜାତ୍ରାକୁ ବିଜେ କରାଇ ଏ ଜାତ୍ରା ସଂପୂର୍ଣ୍ଣେ ପଣ୍ଡା ସିତଳଭୋଗ ମୁଣୋହି କରାଇଲା ଉତାରେ କପୁର ଆଳତି ଦୁର୍ବାକ୍ଷତ ବନ୍ଦାପନା କରିଂ ଜଗତିରେ ବିଜେ କରାଇବ ।

ଲକ୍ଷ୍ମି ଠାକୁରାଣିକି ଯାତ୍ରାକୁ ବିଜେ କରାଇଥିଲେ ଏ ଜାତ୍ରା ବଢ଼ିଲା ଉତାରେ ସିଘାଂସନେ ପରମେଶ୍ୱରଙ୍କ ଶ୍ରୀପୟରଠାରେ ବାମ ପାରୁସରେ ବିଜେ କରାଇବ । ଜ୍ୟେଷ୍ଠା ନକ୍ଷତ୍ର ବେଢ଼ାରେ ରନ୍ ଜଡ଼ିତ ସୁନା ପଂଧମୁଖି ଚୁଳ ଘେନି ହାଥୀ ଉପରେ ବସି ଦେଉଳ ପାଚେରୀ ବାହାରେ ତିନି ବେଢ଼ା ବୁଲାଇଆଣି ଜଗମୋହନ ଦୁଆରେ ଖଟ ଉପରେ ଭୋଗ ମୁଣୋହି ସଂପୂର୍ଣ୍ଣେ ଏ ବନ୍ଦାପନା କରି ଭଣ୍ଡାରେ ବିଜେ କରାଇବ । ଦେବସ୍ନାନଯାତ୍ରା ପହଣ୍ଡି ବିଜୟରେଂ ସୁପାତିମାନ ବହି ପକାଇବ । ଅଣସର ଜାତ୍ରାରେ ତ୍ରୟୋଦଶି ଦିନରୁ ତାଟି ଭିତରେ ପସି ଆଳଟ ଲାଗି କରାଇବ । ଶ୍ରୀ ଗୁଣ୍ଡିଚାଯାତ୍ରା ଦୁଇ ଜାତ୍ରା ପହଣ୍ଡ ବିଜୟରେଂ ସୁପାତି ପକାଇବ । ରାମଜନ୍ମ ଯାତ୍ରା କୃଷ୍ଣଜନ୍ମ ଯାତ୍ରା ବାମନଜନ୍ମ ଯାତ୍ରା ଏ ତିନି ଯାତ୍ରାରେ ଦଶରଥ କଉସୁଲ୍ୟା ବସୁଦେବ ଦେବକି, କସ୍ୟପ ଅଦିତି କାଛି ହୋଇବ । ପ୍ରତିଅରଚା ଦେବତାମାନର ଜେତେ ଜାତ୍ରା ଏହା ସବୁ ଯାତ୍ରା ଭୋଗ ମୁଣୋହି ସଂପୂର୍ଣ୍ଣେ ପରିଛା ଛାମୁରେ କହି ବନ୍ଦାପନା କରିବ । ରାଜପ୍ରସାଦ ନେଇଂ ପରିକ୍ଷା ହାଥରେ ଦେବ । ପରବ ଯାତ୍ରା ନାନା ଆଡ଼ତିରେ ପରିକ୍ଷାକୁ ସାଢ଼ି ହୋଇଲେ ଏ ଦେବ । ଜାତ୍ରାରେ ରାଜପ୍ରସାଦ [106b] ଲାଗି ପରିକ୍ଷକୁ କହି ଲାଗି କରାଇବ ॥୦॥

## ସୁଆଂସ ସରଘର ମେଇକାପ ସେବକ ସେବା ୧୯

ଘେନି ସାଇତିବ ରଥର ଜେତେ ହିଗୁଂଳ ଡ଼ାଙ୍ଗମାନ ମୋତି ବାରଣି କଣ୍ଟାମାନ ଦାନ୍ତ ପୁତୁଳି କାଠ ପୁତୁଳି ଠେକରା ଘୋଡ଼ା ଝଡ଼ା ବଉଳାମାନ ରଥ କତାଦଉଡ଼ି ମଧ କରି ରଥକାଠ ବିକା ବାହାରେ ଜେତେକ ରହିବ ସବୁ ଗଣମଣ କରି ସାଇତିବ । ପରବ ଯାତ୍ରାମାନର ହାଥି ଘୋଡ଼ା ଅସୁର ମୁହଂ ସବୁ କାଠ କମମାନ ସାଇତିବ ॥୦॥

**ବେଣ୍ଟବିଧାଂ ରାଉତ ସେବକ ସେବା ୧୯**

ଏ ମାଘ ସୁକଳ ପଞ୍ଚମି ବେଣ୍ଟ ୧ ଫଗୁଣ କୃଷ୍ଣ ଅମାବାସ୍ୟା ଶିବରାତ୍ରି ବେଣ୍ଟ ୧ ଏ ସୁକଳ ଚଉଠି ବେଣ୍ଟ ୧ ଏ ଅଷ୍ଟମୀ ବେଣ୍ଟ ୧ ଏ ଦ୍ୱାଦଶି ବେଣ୍ଟ ୧ ଦୋଳଯାତ୍ରା ବାସିଦିନ ହଳଦୀ ପାଣି ବେଣ୍ଟ ୧ ଏତେ ବେଣ୍ଟର ରୋହିମାଛ ଏ ବିଧିଂବ ଏଥକୁ କୋଠୁଁ କାଣ୍ଡ ପାଇବ । ଏ ମାଛମାନ ଜେଉଁ ଜେଉଁ ପୋଖରିଠାରେ ଏ ଜାତ୍ରା ହୋଇବ ସେ ପୋଖରିଠାରେ(ହୋଇବ) ଜାଲରେ ଏ ମାଛ ଧରା ହୋଇଥିବ । ବେଣ୍ଟବିଧାଂ ଉତାରେ ଏ ମାଛ ରାଜପ୍ରାସାଦ ହୋଇ ଯିବ ।।୦।।

**ରଥ କତାଦଉଡ଼ି ବଳାକୁ କତାବଳା ସେବକ ସେବା ୧୯**

ଏ ସୁଆଂସ ସିଠିକରଣଠାରୁଂ ସରଘରଂ ଗଣିଘେନିବ । ରଥ ଦଉଡ଼ି ଲମ୍ୱ ହା୧୨୦ ମୋଟ ଦୁଇ ହାଥରେ ରେକା ପୁରିବ । ଏ ପ୍ରକାରେ ଦଉଡ଼ି ବଳିବ ।।୦।।

**ଚାପଦଳଇ ସେବକ ସେବା ୧୯**

ଏ କୋଠଚାପ ନାଆ ବା ଡ଼ଙ୍ଗା ଘେନି ନଈଠାରେ ରହିଥିବ ପରବ ଯାତ୍ରାମାନରେ ଚନ୍ଦନ ଯାତ୍ରାରେ ପାଣି ଛାମୋ[107a]ଣ୍ଡୁଆ ଏକୋଇସି ଦି୨୧ନ ଜେଉଁ ପୋଖରିରେ ଚାପଖେଡ଼ି ହୋଇବ, ତହିକିଂ ଦେସମାନରୁ ନାଆ ଆଣି ଚାପକରି ଜଳ କ୍ରିଡ଼ା ଯାତ୍ରା ନିବୋଲଣା କରିବ । ଯବନ ଉପଦ୍ରବ ପଡ଼ିଲେ ପରାମେଶ୍ୱରକୁଂ ଡ଼ଙ୍ଗାରେ ବିଜେ କରାଇ ଚିଲିକାକୁ ନେମ ।।୦।।

**ଆରୁଆ ସେବକ ସେବା ୧୯**

ଏ ଯବନର ଉପଦ୍ରବ ନିମନ୍ତେ ମାଣିକି ପାଟଣା ଖାଲ କୋଟା ପାଟଣା ଦୁଇ ମୁଁହାଣଠାରେଂ ବୋଇତ ଡ଼ଂଗା ଘେନି ରହିଥିବ । ଯବନ ଉପଦ୍ରବ ବଡ଼ ପଡ଼ିଲେ ପରମେଶ୍ୱରକୁ ଡ଼ଗାଂରେ ବିଜେ କରାଇ ସମୁଦ୍ରକୁ ନେବ ।।୦।।

**ଭାଟରା ସେବକ ସେବା ୧୯**

ଏ ପାହାନ୍ତି ଅବକାଶେ ତିନି ଧୁପରେ ଦୁଇ ଅବକାସରେ ପରବ ଯାତ୍ରାମାନରେ ମଧ ପରମେଶ୍ୱରକଂ ମହିମାମାନରେ କଏ ବାର ପଢ଼ିବ । ଏ ପାଗ ବାନ୍ଧି ଭିତର ଗମ୍ଭରାକୁ ପସିବ ।।୦।।

**ପଦ୍ମକଦଳି ତୋଟା ସେବକ ସେବା ୧୯**

ଏ କଦଳୀତୋଟା ଆରାଧିବ ଏ ତୋଟାରେ ଅମୃତ ବାନି ବନ୍ତଳୋ ପାଟ କପୁରା ବିଳାସ କଦଳି ଗନ୍ଧ ତୁଳସି ମୁଗୁନି କଦଳି କାଠିଆ କଦଳି ମର୍ଜିଂ କଦଳି ଦକ୍ଷିଣା ସାଗର କଦଳି ମଧ କରିଂ ପଦ୍ମକଦଳି ମଧ କରିଂ ନାନା ଜାତି କଦଳି ଲଗାଇ ଆରାଧିବ । ଏ ଫଳ କଞ୍ଚା ପାକଲା ମଧ କରି ରୋଷ ସରଘରେ ପଇଠି କରିବ । ପରବଯାତ୍ରାମାନରେ ଭୋଗକୁ ଚାର ମଣ୍ଡଣିକି ମଧ କରି କଂଚା ପାକଲା ମଧ କରି ପଇଠି କରିବ । ଫୁଲ ଲଗାଇବ ମନ୍ଦା ୭୫୦ ।।୦।।

**ତୋଟାମାନର ମାଳୀ ବାଉରି ସେବକ ସେବା ୧୯**

ଏ ତୋଟାରେ ମାଳୀ ଯେତେ ... ... **[107b]** ନେଇ ଫୁଲଗଛ କିଣି ଲଗାଇବ । ମାଳି ଜଣକେ ୭୦୦ ପଣସ ପିଡ଼ିଆ ପାଣି ଦେଇ ଆରାଧିବ । ଫୁଲ ତୋଳି ମାଳ ଚୁଳ ଗୁନ୍ଥି ଜେଉଁ ଅବକାଶକୁ ଜେଉଁ ଚୁଳମାଳ ଭିଆଣ ଏମାନ ଚୁଳ... ଲୁଗା ଉଲାଗିବାରୁ ସୁଆରେ ପୁରାଇ ଉପରେ ... ...ଗଣମଣ କରାଇଦେବ । ପରବ ଯାତ୍ରାମାନଙ୍କରେ ମକର ଯାତ୍ରାରେ ବଡ଼ ବଡ଼ ଚୁଳମାନ ବଡ଼ ବଡ଼ ମାଳମାନ ଫଳମାନ ମଧକରି ଖଟିବ । ଚନ୍ଦନ ଯାତ୍ରାରେ ଜର କବର ମାଳ ଅଳକା ଚଉସରା ଏ ମାଳମାନ ଖଟିବ । ଦୋଳଯାତ୍ରା ସ୍ନାନଯାତ୍ରା ଶ୍ରୀଗୁଣ୍ଡିଚାଯାତ୍ରାରେ ... ଫୁଲଛତି ଏମାନ ... କୋଠୁଁ ପିଡ଼ିଆ ଜୋଡ଼ା ହାଣ୍ଡି କୋଡ଼ି କଟୁରି କାତି ସୂଚିପଟ ସୁତାପିଡ଼ିଆ ବାଡ଼କୁ ବାଆଁସ ଲଇକତା ଛଣ ଭିଆଣ ପ୍ରମାଣେ ପାଇବ । ବାଉରି ଜେତେଲୋକ ସେବକ ହୋଇବ ସେ ଥାବର ଗଛମାନ ଆରାଧିବ । ଗଛମାନରେ ପାଣିଦେବ, ତୋଟାର ବାଡ଼ମାନ ଦେବ ତୋଟାରେ ଘରକରି ରହିବ । ଜେତେକ ଫଳମାନ ହୋଇବ ପଇଡ଼ ନଡ଼ିଆ ଆମ୍ବ ପଣସ ମଧ କରିଂ ନାନା ଫଳମାନ ଭଲ ପାରିଆଣି ଦେଉଳେ ପଇଠ କରିବ । ତୋଟା ଗାଈ ଦିବସେ ଜଗିବ, ଦଣ୍ଡୁ ଆସି ରାତିରେ ଜଗିବ । କୋଠର ତୋଟା ସିଷ୍ଟକରଣ ଥାଇ ସବୁ ଚରଚା କରିବ, ଏ ମାଳି ଗୋଛାଇତ ବାଉରି ଏ ତେଟାରୁ ଫୁଲ କଞ୍ଚା ଫଳ ... ... ହୋଇଲେ ଦ୍ରୋହ ଦଣ୍ଡେ ଦଣ୍ଡପାଇବ ॥୦॥

**ଶ୍ରୀକ୍ଷେତ୍ର ବଦ୍ୟ ସେବକ ସେବା ୧୯**

ଏ କୋଠରୁ ଜିତିସୁନା ପାଇ ରସବିଷ ଔଷଧ ସଜ କରିବ । ଏ କ୍ଷେତ୍ରେ ସମସ୍ତ ଲୋକଙ୍କୁ **[108a]** ଓ ଯେଉଁମାନେ ସଂନ୍ୟାସୀ ବ୍ରହ୍ମଚାରୀ ମଧକରି ଦେହ ଅସୁସ୍ଥ ହେଲେ ଏହାକୁଂ ଦେଖି ଔଷଧ ଦେଇଂ ଦେହ ସୁସ୍ଥ କରିବ । ଅନାଥ ମଳୁମାନଙ୍କୁଂ ପଥ୍ୟ ପାଚନକୁ ପରିକ୍ଷାକୁ କହିବ ପରିକ୍ଷା ଚରଚା କରିବ ॥୦॥

**ଶସ୍ତ୍ର ବଦ୍ୟ ସେବକ ସେବା ୧୯**

ଏ କ୍ଷେତ୍ର ବଦ୍ୟମାନର ଜାତ୍ରୀମାନର ମଧକରିଂ ରକ୍ତ ପଡ଼ା ମହାବ୍ୟାଧି ହୋଇଲେ ଏ ଦେଖି ଔଷଧ ବିସୋଧ ଦେବ । ଭଲ କରିବ, କାଟ ପୋଡ଼ ବ୍ୟାଧି ହୋଇଲେ କାଟ ପୋଡ଼ କରିଂ ଭଲ କରିବ । ଅନାଥ ମଳୁକୁ ପରିକ୍ଷାକୁ କହିବ, ପରିକ୍ଷା ତାର ଚରଚା କରିବ ॥୦॥

**ଦୁଧ ଘର ସେବକ ସେବା ଯୋଗେ । ମାହାଭୋଈ ସେବକ ସେବା**

... ଦୁଧସର କଢ଼ାଇବାକୁ ଆଡ଼ତିଆ ସେବକମାନଙ୍କୁଂ ଘେନି ବିଗୁଣିତି ଗୁଣି ବହଳ ଦୁଧ ଅଧାମ ସର ଗୋଟିକା ସର ପାପୁଡ଼ି ରମ୍ଭାଳ ଦହି ସରଦହି ଚକାଦହି ପିଠା ଛେନାପଣା ଛେନା ଲଉଣି ଏ ମାନ ଉଜୁ କରିବ । ଦୁଧ ମେଲାଣ ଜାତ୍ରା ନିମନ୍ତେ

ଗୋଗୋଷ୍ଠଠାରୁ ସୁନ୍ଦର ପଲ  ଗାଈ ଦୁହିବ ।  ଗୋପାଳଦେବଂକ ଦୁଧଭାର ଘେନି ଦେଉଳକୁ ଆସିବା ବେଳକୁ ଏ ଦେବଙ୍କ ପଛେ ବାର ଗୋଠ ପଲର ଦୁଧ ଭାର ମାନ ଘେନି ଦୁଧ ମେଲାଣ ଜାତ୍ରାଠାକୁ ଆସିବ ।  ଏଠାରେ ଝୋଲା ଚୁଲିରେ ଦୁଧ ଆଉଟି ଉତୁରାଇ ଦେଇଂ ମକର ଜାତ୍ରାକୁ ଦହି ବସାଇବ । ମକର ଯାତ୍ରାଦିରେ ତିନି ମହାଭୋଇ ବାଘମୁଁହା ବାନ୍ଧି ସିନ୍ଦୂରି ଚଉତୁନା ପୁରାଇଂ ଏ ତିନି ଦହି ପୋଟୋଇକି ଛତା ଧରାଇଂ ଦେଉଳ ବେଢ଼ା ବୁଲାଇଂ ମୋଣୋହିଠାକୁ ମାହାସୁଆର ହାଥରେ ଦେବ । ଜନ୍ମଯାତ୍ରାମାନକୁଂ ଦୁଧ ଘରଂ ଲଉଣି ଖଟୀବ ॥୦॥

### [108b] ବାରଗୋଠ ପଲଇ ସେବକ ସେବା ୧୯

ଏ ଗୋଠମାନର ଗଉଡ଼ ପଲଇମାନେ କୋଠ ଗାଈ ଗଣିତା କରି ଘେନିଥିବେ । ଏ ଗୋଠମାନରେ ଜେତେ ଦୁଧ ହୋଉଂଥିବ, ଏହା ଆଣି ଦେଉଳ ଦୁଧଘରେ ପଇଠି କରି କୁଂଚାରେ ମଣାଇଂ ଦେଉଂଥିବ ।  ଏ ଗାଈ ଗୋଠମାନ ଚଉବିସିକୁଦ ଦଣ୍ଡପାଟେ ରାଏ ତିରଣ ବିସେ ଦେସମାନରେ ଥିବ । ଗାଈମାନେ ବିଆଇଲେ ଚଂଚୁଂ ହୋଇଲେ ଦେଉଳ ବେହୋରଣୁ ଲୋକନେଇଂ ଦେଖାଇ ତଲପ କରାଇବ । ଛଅ ଛଅ ମାସରେ ଗାଈ ବାଛୁରିଂ କରାଇବ । ଏ ପଲଇମାନର ଦୁଧବିକା ସୁଣିଲେ ଦୁଧରେ ପାଣି ପୁରାଇବା ପରିକ୍ଷ ବୁଝିଲେ ଦ୍ରୋହ ଦଣ୍ଡେ ଦଣ୍ଡ ପାଇବ । ଏ ବରତନକୁ ଗାଈମାନଙ୍କ ଗୁହାଳତୋଳାକୁ ମଧ କରି ସେଇ ବିସେଇ ଦେସମାନରୁ ଜୀତିସୁନା ପାଇବ ॥୦॥

### ଦୁଧଘର ଜଗିଆ ପାଇକ ସେବକ ସେବା ୧୯

ଏ ରାତ୍ର ଦିବସ ଦୁଧଘର ଜଗିଂଥିବ, ଏ ଗଉଡ଼ ନିଯୋଗ ବିଶେଇଠାରୁଂ ବାରଗୋଠ ପଲଇ ମଧରୁ... ନିତି ଜେତେ ଦୁଧ ପଇଠ ହୋଉଂଥିବ ଏହା ପରିକ୍ଷାକୁ ଗ୍ୟାଂତା କରୁଂଥିବ, ମାହାଭୋଇ ଆଡ଼ତିଆ ଜେତେ ଲୋକ ଦୁଧଘରେ ଆଡ଼ତି କରୁଥିବେ ଏମାନକୁଂ ଦେଖି ଛାଡୁଥିବ ।

### ଭୋଗ ତଡ଼ପ ଖଟୀବାକୁ ଭିଆଣ ନିଯୋଗ ବିସୋଇ ସେବକ ସେବା ୧୯

ଏ ସେବାରେ ଖଟୀବ ଘିଅ ବିରି ମୁଗ ସୋରିସ ଅଦା ନଡ଼ିଆ ଅମୃତବାନୀ କଂଚା ବନ୍ତୋଳ କଦଳି ଆଳୁ ବାଇଗଣ କଖାରୁ ଆମ୍ବୁଲ ତିନ୍ତୁଳି ଟଭା ପଇଡ଼ ପାନ ହିଙ୍ଗୁ ବଡ଼ଜିରା ମରିଚ ଲବଙ୍ଗ ଜାଇଫଳ ମେଥି କପୁର ହଳଦି ଗୁଡ଼ଖଣ୍ଡ ସାରେଆ ଖଣ୍ଡ ନବାତ ଲକ୍ଷ୍ମୀବିଳାସ ଜାଳି କାଠ ଏତେକ ଖଟିବ । ଦିନକୁଦିନ ପରି[109a]କ୍ଷା ଛାମୁରେ ଭିଆଣ ପ୍ରମାଣେ ତୁଳ ମାପକରି ଦେବ । ଏମାନଙ୍କରେ ଏ ପଡ଼ିଆ ନୋହିବ ॥୦॥

**ଗଉଡ଼ ନିଯୋଗ ବିସେଇ ସେବା ୧୮**

ଭିଆଣ ଦରେ ନିତି ଦୁଧଘରେ ସିଷ୍ଟ କରଣ ପରିମୁଖେ ଭିଆଣ କୁଂଚାରେ ମପାଇ ଦେବ । ବଡ଼ସିଂଘାର ଅବକାଶ ଖିରି ଦୁଧସର ଧୂପ ଉତାରେ ଗାଈ ଦୁହାଁଇ ଆଣି ଖଟିବ । ଭିଆଣକୁ ପଡ଼ିଆ ନୋହିବ ।

**କୁମ୍ଭାର ନିଜୋଗ ବିସେଇ ସେବକ ସେବା ୧୮**

ଏ ଭୋଗରନ୍ଧାକୁ ଭିଆଣ ପ୍ରମାଣେ ନିତି ହାଣ୍ଡି ଖଟିବ । ବଡ଼ ଆଉଟଣା ସାନ ଆାଉଟଣା ଖ... ... ବଡ଼ କାନିକା କୁଡୁଆ ଅପମାଲୁ ଅଧା ଆଟିକା ବଢ଼ା ବଡ଼ସରା ଘସା ବର୍ମାଂରମ୍ଭାଳକୁ ଠେକି ପଣାହାଣ୍ଡିମାନ ଦିପାଳି ପରବଯାତ୍ରାମାନ ଉପାଧିକି ଭିଆଣ ପ୍ରମାଣେ ହାଣ୍ଡି ସାତପୁରି ଯାତ୍ରାକୁ ବଡ଼ ତେଲାଉଣି ଇଉଂ ପରବ ଯାତ୍ରାମାନରେ ଅକୁଂରାରୋପଣ ହୋଇବ, ଏଥିରୁ ... ସରା ତେଲୋଉଣି ନିତ୍ୟାନି କପାଟ ମୁଦକୁ କଂଚାମାଟି ପିଣ୍ଡୋଳା ଏତେକ ଖଟିବ । ଏଥୁଂ କିଛି ହିଁ ପଡ଼ିଆ ନୋହିବ । ଏହା ଗଙ୍ଗବଂସ ରଜାମାନକଂ ସରିକି ନିଜପଡ଼ା କୁମ୍ଭାର ଖଟୁଥିଲା । ଏ ଉତାରେ ସୂର୍ଯ୍ୟ ବଂସେ କପିଳେଶ୍ୱର ଦେବ ମହାରାଜାକଂର ଅଧିକ ଭୋଗ ହୋଇଲାକୁ ... ନିକଟେ ନେଳିପୁର ସଂଜରାଜ ପଡ଼ା କରି କୁମ୍ଭାର ପଡ଼ା ବସାଇଂ ଏ ନିଜପଡ଼ା କୁମ୍ଭାର ରାଜପଡ଼ା କୁମ୍ଭାର ମିସିଂ ହାଣ୍ଡିମାନ ଖଟିଲେ । ଏ ହାଣ୍ଡିଗଢ଼ା ମାଟୀକି ସମଙ୍ଗ ବିଲରୁ ଭୂଇଁ ଦୁଇବାଟି ସିଲେ। ।।୦।।

**[109b] ଭୋଗ ମୁଣୋହିରେ ଖଟିବାକୁ ତରଣ ଖରଡ଼ାଲୁଣ ଖଟିବା ବିସୋଇ ସେବକ ସେବା ୧୮**

ଭୋଗକୁ ଦଣ୍ଡପାଟମାନ ଅଳା.. ମାନରଂ ଶ୍ରୀପୁରୁଷୋତମେ ପଡ଼ିବା କୁଢ଼ା ଲୁଣ କଉଡ଼ିରୁଂ ପାତୁଏ ଖରଡ଼ା ଲୁଣ ଖଟିବ । ପରବ ଯାତ୍ରା ଭୋଗକୁ ଖଣ୍ଡ ଖଟିବ...

**ଅମୃତ ମଣୋହିକି ଉପରେ ବିଡ଼ିଆ ଲାଗିକି କପୁରଦାସ ଗୁଆ ଲାଗିକି ଗୁଆଟାକଂ ବିସେଇ ସେବକ ସେବା ୧୮**

ଏ ଶ୍ରୀପୁରୁଷୋତ୍ତମ ସରଘର ଗୁଆଟାକଂ କୁଢ଼ାରୁଂ ଏ ଦିନର ଗୁଆ ଖଟିବ । କସାଗୁଆ ନ ଦେବ । ଏ ଗୁଆ ପଡ଼ିଆ ନୋହିବ । ପରବ ଯାତ୍ରାରେ ବିଡ଼ିଆ ଲାଗି ଗୁଆ ଦେବ ।।୦।।

**ପାଟହାଥି ମାହୁନ୍ତ ସେବକ ସେବା ୧୮**

ଏ ପାଟ ହାଥିକି ସେବା କରିବ । ମାସକୁ ମାସ ଜେଷ୍ଠା ନକ୍ଷତ୍ର ଦିନର ପରମେଶ୍ୱରକଂ ବନ୍ଦପନା ବଢ଼ିଲା ଉତାରେ ରତ୍ନ ଜଡ଼ିତ ସୁଂଝଣ ପଞ୍ଚମୁଖି ଚୁଳ ହାଥି

ଉପରେ ବିଜେକରାଇ ଦେଉଳ ତିନିବେଳ ବୁଲାଇବ ।।୦।।

**ଧାନ ଘର ସେବକ ଯୋଗେ । କୋଟାଇତା ସେବକ ସେବା ୧୯**

ଏହାକୁ ଧାନଘରଂ ଚକରିଆ ନଉତିରେ ଧାନ ମାପିଦେବ । ଶ୍ରୀଓରେଆ ଭାତକୁ ସତାଇସା ଧାନ ଖ୧୯ ଚାଉଳ ଦସ ନଉତି ଦେବ । ବଗଡ଼ା ଭାତକୁ ପଂଚିସା ଧାନ ଖ୧୯ ଚାଉଳ ନଅ ନଉତି ଦେବ । ପଡ଼ିଚାଉଳକୁ ଚଉବିସା ଧାନ ଖ୧୯ ଚାଉଳ ଦସ ନଉତି ଦେବ । ଏ ଧାନ ପାଣିରେ ବତାରାଇ କୁଟି ନ ଦେବ । ଏ ଜେତେ ଧାନ କୋଟା ନେଇଂଥିବ ତେତେ ଧାନ ସିଷ୍ଟକରଣ ଲେଖା ପ୍ରମାଣେ ଚାଉଳ ପରବେଶ କଲା ଉତାରେ ଆଉ ଧାନ କୋଟା ନେମ । ମକରଯାତ୍ରା ... **[110a]** ଭିଆଣ ଚାଉଳମାନ ଦେସମାନରଂ ଚାଉଳ ମେଲାଣ ଜାତ୍ରାଦିନ ଅଇଲେ ଏ ଚାଉଳମାନ ସିଂହଦ୍ୱାରଠାରଂ ଚାଉଳ ମେଲାଣ ଯାତ୍ରା ନିମନ୍ତେ ସୁନା ଥାଳି କୁଣ୍ଡ କୁଡୁକା ଏମାନରେ ଚାଉଳ ପୁରାଇଂ ମୁଣ୍ଡିଆଇଂ ନେଇଂ ଦେଉଳ ଧାନଘରଠାରେ ପ୍ରବେସ କରିବ ।

**ଧାନଘର ତାଡ଼ଣିଆ ମୁଦୁଲି ସେବକ ସେବା ୧୯**

ଏ ଦେସମାନର ଧାନମାନ ଆସି ପଇଠ ହୋଇଲେ, ଏ ଧାନମାନରେ କଣ୍ଡା ଅଗାଡ଼ି ଥିଲେ ଏ ଧାନ ଉଡ଼ାଇଂ ଚକରିଆ ଚଉଦ ମାଣ ନଉତିରେ ମାପି ଘେନିମ । ଭୋଗଚାଉଳକୁ କୋଟାଇତାମାନ ମୁଳେ କୋଟା ଦେବା ନିମନ୍ତେ ସିଠି କରଣ ପରିମୁଖ୍ୟେ ମାପିଦେବ । କୋଟାଇତାମାନ ତହୁଂ ଚାଉଳ ମାପି ଘେନି ତଲପ କରାଇବ । ରୋସୋଅକୁ ଚାଉଳ ଚକରିଆ ଅଢ଼ାରେ ମାପିଦେବ ।

**ଧାନଘର ଜଗିଆ ପାଇକ ସେବକ ସେବା ୧୯**

ଏ ଧାନଘର ଜଗିଥିବ । ଧାନ ଚାଉଳ ପଇଠବେଳେଂ ବଏ ବେଳେଂ ଜଗିଂଥିବ । ଏ ଧାନଘରର ଚୋରି ହାରି ଭଲମନ୍ଦ କଥା ଏହା ପରିକ୍ଷା ଛାମୁରେ ଗ୍ୟାତାଂ କରୁଂଥିବ ।

**ଦେଉଳ ଆଏତନ ଭିତରେଂ ବାହାର ପଏଂରା ସେବକ ସେବା ୧୯**

ଏ ପାହାନ୍ତି ଅବକାସବେଳକୁ ଜଗମୋହନ ମଧ୍ୟରେ ଦେଉଳ ଚାରିଦିଗ ଦେବତାମାନଙ୍କଂ ଆଏତନ ମଧ୍ୟ କରିଂ ସବୁ ପଅଂରିବ ।।

**ତାମରା ମାହାରଣା ସେବକ ସେବା ୧୯**

ପରମେଶ୍ୱରଙ୍କଂର ଜେ ସୁନା ରୂପା ତମ୍ବା ପିତଳ ଜେତେ ଖଟଣି ଜୋଗାଡ଼ମାନ ଘଟଣ ହୋଇବ ତାହା **[110b]** ତଳ ମଧ୍ୟ ସବୁ ତୁଳପଲ କରି ଭଣ୍ଡାରଂ ଘେନି ସୁନା ରପା କାମ ଦେଉଳେ ଗଢ଼ିବ । ତମ୍ବା ପିତଳ କାମ ଏହା ଘରଠାରେ ଗଢ଼ିବ । ଏ ସବୁ

କମ ଖଏ ପାଡ଼ି ସବୁ ତୁଳପଳ କରିଦେବ । ଏ ବାହାରେ ଖଟଣି ଜୋଗାଡ଼ମାନ ଭାଗତୁଟ ହୋଇଲେ ଏ କମମାନରେ କୁଟି ଠିକଣା କରିଦେବ । ଏ ବାହାରେ ପରବ ଯାତ୍ରାମାନରେ ଆଉ ନାନା ଆଡ଼ତିରେ ଜେତେ ସୁନା ରପା ତମ୍ବା ପିତଳ କମ ଘଟଣ ହୋଇବ । ଏ ସବୁ ଘଟଣ କରିବ, ଏ କମମାନ ସବୁ ଘଟଣ ହୋଇବାକୁ ଜେତେ ସୁରୀଖାର ଟାଙ୍ଗଣାଇଉ ତେନ୍ତୁଳି କୋଇଲା ମଧ ଜେତେ ଲାଗିବ କୋଠୁଂ ପାଇବ ।

**କଂସାରି ମାହାରଣା ସେବକ ସେବା ୧୮**

ଏ ଧୁପଘଣ୍ଟ ଗଢ଼ିବ । ଦୋଳଯାତ୍ରା ଶ୍ରୀଗୁଣ୍ଡିଚାଯାତ୍ରା ରଥ ମଣ୍ଡଣିକି ମଧକରି କଂସା ଚାନ୍ଦି ଦରପଣ ଗଢ଼ିବ । ଧୁପ ଉପରକୁ ସ୍ନାନକୁ ମଧ କରି ସର୍ବାଙ୍ଗ ଦର୍ପଣ ଗଢ଼ିବ । ଏ ବାହାରେ କଂ । କମ ଜେ ଲୋଡ଼ା ହୋଇବ ତାହା ଗଢ଼ିବ,ଏଥକୁ ଭଣ୍ଡାର ...ରିଖଏ ପାଡ଼ୀ ଆଣି ପ୍ରବେସ କରିବ । ...କୁ କୋଇଲା ଟାଙ୍ଗଣା ମଧ ଜେ ଲାଗିବ କୋଠୁଁ କିରଣ ହୋଇବ ।।

**ଅଷ୍ଟଲୋହି ମାହାରଣା ସେବକ ସେବା ୧୮**

ଏ ଧୁପ ପୁଜା ଘଣ୍ଟି ଧୁପ ଦିପାବଳି ଦୋଳଯାତ୍ରା ଶ୍ରୀଗୁଣ୍ଡିଚା ଯାତ୍ରା ରଥମଣ୍ଡଣି ଘଣ୍ଟି ଘାଗୁଡ଼ି ମଧ ପୁରୁ... ଦେବତା ସୁନା ରପା ତମ୍ବା ପିତଳର ଘଟଣ ହୋଇବ, ତାହା ସବୁ ପୁରୁଣି କମ ଗଢ଼ିବ । ସୁନା ରପ କମ ଦେଉଳେ ଗଢ଼ିବ । ତମ୍ବା ପିତଳ କମ ଏ ଘରଠାରେ ଗଢ଼ୀ ପଇଠ କରିଦେବ । ଏ କମ ଘଟଣରେଗ ଏ ଜେତେ ହୋଇବ ସିଲୋ ପାଇବ । ଏ କମ **[111a]** କରି ଭଣ୍ଡାରେ ପଇଠ କରିବ ।।

**ପାଟରା ବିନ୍ଧାଣି ସେବକ ସେବା ୧୮**

ଏ ଅଣସର ଜାତ୍ରାରେ ... ... ଶ୍ରୀଅଙ୍ଗକୁ ଜେତେ ପାଟ ଡ଼ୋର ଲାଗିବ ସେଥକୁ ଭଣ୍ଡାରଂ ପାଟ ତୁଳି ନେଇଂ ଡ଼ୋର ବଳି ଖଏପାଡ଼ି ତୁଳାଇ ଦେବ । ଏ ବାହାରେ ।

**ଚନ୍ଦନଘସା କରଟିଆ ମୁଦୁଲି ସେବାକୁ ୧୮**

ପଣ୍ଡା... ପଶୁପାଳକମାନକୁଂ ପରିଛା ବେହୋରଣେ ଚନ୍ଦନ ଦେବ । ଏ ପଣ୍ଡା ପଶୁପାଳକମାନକଂର ଆଲଟ ଲାଗି ବେଳେ ଏମାନଙ୍କ ଦେହର ଝାଳ ଦୁର୍ଗନ୍ଧ ନିମିତ୍ତ୍ୟେ ଏମାନଙ୍କ ଦେହରେ ବୋଳିବାକୁ ସରସା ସହନ ଚନ୍ଦନ ଖଟୀବ ।

**ସୁଗନ୍ଧ ଘଟୁଆରି ସେବକ ସେବା ୧୮**

ଭିଆଣକୁ କରଟିଆ ମୁଦୁଲି ଜଉଁ ସରସାଚନ୍ଦନ ଘସିଥିବ ତହିଁ ଭଣ୍ଡାରୁ କପୁର କସ୍ତୁରି ଗନ୍ଧ... ଅଗୁର କୁକୁଂମ ପନୀର ପାଣି ମିସାଇଂ ବାଟି ଚତୁସମ ଗୋଳି ସୁନାକପୋରାରେ ପୁରାଇ ଖଟଣିକି କରଟିଆ ମୁଦୁଲି ହାଥେ ଦେବ । ଭଣ୍ଡାରଂ

ଚନ୍ଦନକାଠ ଅଗୁରୁ ତୁଳାଇ ଘେନି ଖଟଣିକି ଗନ୍ଧଗାଳିବ, ଏ ଗନ୍ଧ ଗଳାକୁ କେତେକ ଲାଗିବ ତାହା କୋଠୁଁ ପାଇବ । ଦୋଳ ମଣ୍ଡପ ଉପରେ ଦେବସ୍ନାନ ମଣ୍ଡପରେ ଶ୍ରୀଗୁଣ୍ଡିଚା ଯାତ୍ରା ରଥ ଉପରେ ଆଉ ପରବ ଯାତ୍ରାମାନରେ ପହଣ୍ଡବୀଜେବେଳେଂ ମଧକରିଂ ସୁନା ରପା ଧୂପକାଠିରେ ଅଗୁରୁ ବାସ ଧୂପଦେବ । ନିତ୍ୟାନି ଜଉଂ ଅବକାସେ ଜେତେ ଚତୁସମ ଲାଗି ହୁଅନ୍ତି ଏ ବାହାରେ ରାଜପ୍ରସାଦ ଚତୁସମ ମଧ କରି ଏହା ବେବସ୍ଥା କରିବ । ଏ ବାହାରେ ବାହାର ଦେଉଳି ଦେବତାମାନଙ୍କୁ ନିତ୍ୟାନି ଜେଉଁ ଜେଉଁ ଦେବତାମାନେ ସରସା ଚନ୍ଦନ ପାନ୍ତି ସେ ଦେବତାମାନଙ୍କୁଂ ପରମେଶ୍ୱରଙ୍କଂ ଖଟଣି ଚତୁସମ ଦେଲା ଉତ୍ତାରଂ କପୂର କସ୍ତୁରି ନ ମିସାଇ ସରସା ଚନ୍ଦନ ଦେବ ।

**[111b] ରୋସ ଛତିସା ନିଯୋଗ ସେବକ ସେବା ୧୯**

ଏ ଭାତ ସୁଆର ସେବକ ନାଏକ ଜଣ୬ଘ ରୋସକୁଅଂରୁ ପାଣି ବୋହିବାକୁ ବଇଠି ପାଳିଆ ସେବା ୧୨ଘ ଜ୧୨ ଚାଉଳଧୁଆ ସେବା ୪୯ ଜ୪ ହାଣ୍ଡିରେ ଚାଉଳଭରା ସେବା ୪୯ ଜ୪ ଚୋଳା ଲଗାଇ କାଠ ଜାଳିବାକୁ କାଠପେଲା ସେବା ୪୯ ଜ୪ ଭାତ ଓଲାଇଂ ଥୋଇବାକୁ ଓଲାଣିଆ ସେବା ୪୯ ଜ୪ ଭାତ ଗୋଳିବାକୁ ପାଣି ସେବା ୪ ଜ୪ କାଠଚଟୁ ଘେନି ହାଣ୍ଡିରେ ଭାତ ଚଲାଇବାକୁ ଚଲାଣିଆ ସେବା ୪୯ ଜ୪ ଗାଏ ଛତିସା ନିଜୋଗ ସେବା ୩୬୯ ନାଏକ ଜଣ୩୬୯ ଏଥକୁ ଏହାର ପୋ ଭାଇକି ବେହୋରଣେ ତଲପ କରାଇଂ ସାଡ଼ୀ ଚନ୍ଦନ ଦେଆଇ ଏ ସେବା ଖଟି ନିବୋଲଣା କରିବ ॥୦॥

**ପିଠାସୁଆର ସେବା ସାରେଆପିଠାସୁଆର ସେବକ ସେବା ୧୯**

ଏ ସାରେଆ ପିଠା କରିବ ବଡ଼ନାଡ଼ି ପାହାନ୍ତି କପାଟ ଫେଡ଼ା ସେବକ ଅବକାସ ପାଣିସଙ୍ଖ ବାଜିଲେ ଏ ପରିକ୍ଷା ପରକରଣ ଖଟଣୀ ସେବା ସେବକମାନଙ୍କୁ ଡ଼ାକି ଏ ସମସ୍ତେ ହେଁ ଜାଇ ହୋଇଲା ଉତାରେ ପରିକ୍ଷାକୁ ମୁଦ ଦରସୁଆକରି ମୁଦ ଭାଗିଂବ ॥୦॥

**ଦଏଣାମାଳୀ ଗୋଛାଇତ ସେବକ ସେବାକୁ**

ଏ ଦଏଣା ଲଗାଇ ତୋଟା ଆରଧିବ । ନିତ୍ୟାନି ଲାଗିକି ଦଏଣାମାଳ ଖଟିବ । ପରବଜାତ୍ରାମାନରେ କୋଠ ... ... ରାଜପ୍ରସାଦ ଦଏଣାଧଣ୍ଡି ଫୁଲଧଣ୍ଡି ଖଟିବ ଜାତ୍ରାମାନଙ୍କଂରେ ଦଏଣା ମୁକୁଟ ଶ୍ରୀଭୁଜ ଶ୍ରୀପୟର ଶଙ୍ଖଚକ୍ର ଏମାନ ଖଟିବ ॥

**ଖଟଣୀ ସୁନାରୂପା ତମ୍ବା କଂସା ଜୋଗାଡ଼ମାନ ମଜା ସେବକ ସେବା ୧୯**

ଏ ନିତି ଦିନ ସକାଳେ ସୁନାରୂପା ତମ୍ବା କଂସା କୋଠୁଂ ଚାଉଳ ଚୁନା ତିନ୍ତୁଳି ଘେନି ମାଜିବ । ତିନି ଧୂପ ଅବକାସ ମାନରେ ଜେତେ ସୁନା ରୂପା ତମ୍ବା କଂସା ଜୋଗାଡ଼ମାନ ଭୋଗରେ ଉଠୁଥିବ, ଏହା ଥରକୁ ଥର ମାଜି ଭଣ୍ଡାର ଥାଳିଘରେ ପଇଠ କରୁଥିବ ॥୦॥

**ଖଟଣି ସେବକମାନେ ଗୋଡ଼ ଧୋଇବାକୁ ଜେ ଜାହା ସେବା ଖଟିବାକୁ ଏ ପାଣି ଖଟିବାକୁ ପା[112a]ଣିଆ ଆପଟ ସେବା ୧୯**

ଏ ନିତ୍ୟାନି ପାଣି ବହିଆଣି ଖଟୀବ । ପଣ୍ଡା ପଶୁପାଳକମାନେ ମଧ ହୋଇଂ ଖଟଣୀ ସେବକ ଗୋଡ଼ ଧୋଇବାକୁ ପାଣି ଥାଳିଘର ଠାରେ ଥୋଇଥିବ । ରୋସସେବକମାନେ ଗୋଡ଼ ଧୂଆକୁ ରୋସଘରକୁ ଆଉଠାରେ ପାଣି ଥୋଇଥିବ ।

**ରନ୍ (ତୁଳ)କମ ବିନ୍ଧାଣୀ ସେବକ ସେବା ୧୯**

ଏ ତଢ଼ାଉ ରନ୍‌କମମାନ ଜେତେକ ଏ ସବୁ ଗଢ଼ିବ । ଭଣ୍ଡାରଂ ସୁନାରୂପା ରନ୍ ଜେତେକ ତୁଳପଳ ହୋଇ ଏହା ମୁଳେ ଦିଆ ହୋଇବ । ଏଥକୁ ଏ କମ ଘଟଣ କରି ପରିକ୍ଷା ବେହୋରଣରେ ତୁଳପଳ କରି ରନ୍ ଗଣମଣ କରିଦେବ । ଏ କମ ଘଟଣମାନକୁ ଜାହା ଲାଗିବ ତହିଁକି ଭଣ୍ଡାରୁ କଉଡ଼ି ପାଇବ । ଏ କମ ଏ ଲାଗ ଲଗତି ରହିଲେ ଏ ଦେବ ।

**ସୁନାରପା ମାଠକମ ବିନ୍ଧାଣି ସେବକ ସେବା ୧୯**

ଏ ଜେତେ ମାଠକମ ତଢ଼ାଉ ଖଟଣୀ ଜୋଗାଡ଼ର ସୁନାରୂପା କମମାନ ମଧକରି ଏ ଭଣ୍ଡାରୁ ସୁନାରୂପା ତୁଳଗଣ କରି ଘେନି ଏ କମମାନ ଗଢ଼ିତୁଳାଇ ପଇଠକରିବ । କମର ଲଗତି ରହିଲେ ଏ ଦେବ । ଏ କମ ଘଟଣକୁ ଜେ ଭଣ୍ଡାରଂ କଉଡ଼ି ପାଇବ ।।୦।।

**ଶୋଳ ଚିତା ବିନ୍ଧାଣି ସେବକ ସେବା ୧୯**

ଏ ଶ୍ରୀଗୁଣ୍ଡିଚାଯାତ୍ରା ରଥ ଉପରେ ତିନିଠାକୁରକଂ ଲଲାଟେ ଲାଗି ହୋଇବାକୁ ଭଣ୍ଡାରୁ ସୁନାରୂପା ରନ୍ ନେଇ ସୋଲଚିତା ଗଢ଼ିଆଣି ରଥ ଉପରେ ଖଟିବ ।।

**ଚିନରା ମାହାରଣା ସେବକ ସେବା ୧୯**

ଏ ପିଣ୍ଡୀକା ସୁନା ରପା ରନ୍‌ମାନ ସବୁ ଭଣ୍ଡାର କଟାଳେ ତୁଳ ପଳ କରିବ କସବାନ କରିବ, ରନ୍‌ମାନ ଚିହ୍ନିବ, ଟକାଂର ଭେଣ୍ଡି ବାହାର ମୁଦ୍ରା ଚିହ୍ନିବ । ଏହା ତୁଳ ପ୍ରମାଣେ ସୁନାଟକାଂ ଆୟ ବୟ ହୋଇବ । କପୁର କସ୍ତୁରୀ ତୁଳିବ ।।

**ସିପୁଟି ମାହାରଣା ସେବକ ସେବା ୧୯**

ଏହାର ସେବା ଯେତେ ମଢ଼ିଆଳ ଲୁଗା ଲାଗିରେ ଦେଆ ହୋଇବ, ଏ ଲୁଗାମାନ ଗନ୍ତାମୁଳେ ବାଡ଼ ମୁଳ କରି ଚିହ୍ନିଦେବ, ଶ୍ରୀ ବାଡ଼ରେ ଶଙ୍ଖଚକ୍ର ଚିହ୍ନଦେବ । ଲଙ୍ଗଳ ବାଡ଼େ ହଳ ମୁସଳ **[112b]** ଚିହ୍ନ ଦେବ । ପଦ୍ମବାଡ଼େ ପଦ୍ମଚିହ୍ନ ଦେବ । ସୁଦର୍ଶନ ବାଡ଼େ ଗଦାଚିହ୍ନ ଦେବ । ଏ ପ୍ରକାରେ ମକର ଗନ୍ତା ମେଷଗନ୍ତା ଦିବ୍ୟାବତାର ଗନ୍ତା କୁଆଂର ଗନ୍ତା ଏ ଚାରି

ଗନ୍ତାରେ ଯାତ୍ରା ନାମ ଧରି ଅଖର ଦେଇ ଏ ପ୍ରକାରେ ଚିହ୍ନମାନ ଦେବ । ଏ ବାହାରେ ସେହ୍ନାଲାଗିର ଲୁଗାମାନ ସିହିବ ... ... ମସହେରି ସେଜସୁପାତି ମୁଚୁଳା ଗାଲ ମୁଚୁଳି ଛତାତରାସ ରାଜପ୍ରସାଦ ତୋଳାମୁଣି ଚୋପମୁଣି ପତକା ଦ୍ଵାରଚନା କୁମାରଯାତ୍ରା ପସା ସକଟା ନ୍ୟାୟବଳ ପାଲି ଦୋଳଯାତ୍ରା ଫଗୁ ଡ଼ାବମାନ ରାଜପ୍ରସାଦ ପତନି ଗଦିରେ ନେତବିଳାସ ରାଜପ୍ରସାଦ ମାହାପ୍ରସାଦ ଡ଼ିବାର ହରିବଲ୍ଲଭ ଡାଟ... ... ମଧିକରି ସବୁ ସିହିବ । ଦୋଳଯାତ୍ରା ସ୍ନାନଯାତ୍ରା ଗୟଳ ଫିରିଫିରା ଶ୍ରୀଗୁଣ୍ଡିଚାଯାତ୍ରା ରଥମଣ୍ଡଣି କମମାନ ମଧିକରି ସବୁ ସିହିବ । ପରମେଶ୍ଵର ଦସ ଅବତାର ମୁଣିମାନ କମମାନ ସିଂହିବ । ନେତ୍ର ଉଛବ ଯାତ୍ରାବେଳେ ଡ଼ୋଳାଦେବା ବେଳକୁ ଛାମୁରେ ନେତଟେରା ଧରିଥିବ । ଦେଉଳ ଗମ୍ବରା ଭିତରେ ମେଲାକାଠ ସିହିବ ॥

### ଦାଣ୍ଡ ବାଜଣା ସେବକ ସେବା ୧୯

ଏ ତିନି ଧୁପବେଳେ ସବୁ ପରବ ଯାତ୍ରା ପରବମାନରେ ପିଟା ଘଣ୍ଟ ବାଇବ । ରାଜପ୍ରସାଦ ସଂଗତେ ଦାଣ୍ଡେ ବାଇ ରାଜକଟକ ଜିବ । ଏହାର ସେବା ନିବୋଲଣା ଉଠାରେଂ ବାହାର ଭଣ୍ଡାରେଂ ଘଣ୍ଟମାନ ବାହୁଡ଼ା କରିବ ॥୦॥

### ବୀରକାହାଳିଆ ସେବକ ସେବା ୧୯

ଏ ନିତ୍ୟାନି ତିନି ଧୁପ ଆଳତିବେଳେ କାହାଳୀ ବାଇବ ପୁଷ୍ପ ଆଞ୍ଜୁଂଳି ବିଜେ ବେଳେଂ ବାଇବ । ସବୁ ପର୍ବଯାତ୍ରାମାନରେ ବାଇବ । ଦ୍ଵାଦଶ ଯାତ୍ରା ରାଜପ୍ରସାଦ ସଗଂତେ କାହାଳୀ ବାଇ ରାଜକଟକ ଜିବ ॥

### ପାହାନ୍ତି ଅବକାସ ନିଦ୍ରାଆଳସ ଭାଙ୍ଗିବାକୁ ପାଣିସଙ୍ଖୁଆ ସେବକ ସେବା ୧୯

ଏ ରାତ୍ର ଦୁଇଘଡ଼ି ଥାଉଁ କପାଟ ଫେଡ଼ିବା ନିମତେଂ ଜଗମୋହନେ ଯୋଡ଼ା ସଂଖ ବାଇବ । ବଲଭ ଉତମ ସିଂଘାର ଭୋଗ ମୁଣୋହି ସଂପୂର୍ଣ୍ଣେ ଏକା ସଂଖେ ବାଇବ । ଚନ୍ଦନଯାତ୍ରା ୪୦ ଦିନ ରାତ୍ରି ଆଳଟ ଲାଗି ସଂ**[113a]**ପୂର୍ଣ୍ଣେ ସଂଖ ବାଇବ, ରାଜବିଜୟରେ ରାଜାଏ ପରମେଶ୍ଵରକୁଂ ଦରସନ କରିବା ବେଳେ ସଂଖ ବାଇବ ॥

### ଧୁପ ସଙ୍ଖ ମହୁରିଆ ସେବକ ସେବା ୧୯

ଏ ତିନି ଧୁପ ବେଳେ ସଙ୍ଖମହୁରି ବାଇବ । ନାନା ପରବ ଯାତ୍ରାମାନରେ ସଖଂ ମହୁରି ବାଇବ ।

### ମାଦଳ ମୃଦଙ୍ଗ ସେବକ ସେବା ୧୯

ଏ ତିନି ଧୁପରେ ତିନି ବେଢ଼ାରେ ଜଗନ୍ନାଥବଲ୍ଲଭ ଅବକାସ ରାତ୍ର ବଡ଼ସିଂଘାର ଅବକାସରେ ଏ ନାଟ ଖଟଣିବେଳେ ମାଦଳ ବାଇବ । ନାନା ପରବ ଯାତ୍ରାମାନ ନାଟ ଖଟଣିରେ ମାଦଳ ବାଇବ ॥

**ଜୋଡ଼ା କାହାଳିଆ ସେବକ ସେବା ୧୮**

ଏ ତିନିଧୂପ ଏ ତିନି ବେଢ଼ାରେ ଦୁଇ ପହର ଧୂପ ଉତାରେ ଜଗନ୍ନାଥବଲ୍ଲଭ ଅବକାସରେ ରାତ୍ର ବଡ଼ସିଂଘାର ଅବକାସରେ ନାନା ପରବ ଯାତ୍ରାମାନରେ ନାଟଖଟଣିବେଳେ ଏ ଜୋଡ଼ା କାହାଳୀ ବାଇବେ ॥

**ଉପାଗାଂଆ ସେବକ ସେବା ୧୮**

ଏ ତିନିଧୂପବେଳେ ଏ ତିନିବେଢ଼ାରେ ଜଗନ୍ନାଥବଲ୍ଲଭ ଅବକାସରେ ବଡ଼ସିଂଘାର ଅବକାସରେ ନାନା ପରବ ଯାତ୍ରାମାନରେ ଏତେଠାରେ ନାଟଖଟଣିବେଳେ ଉପାଙ୍ଗ ବାଇବ ॥

**ବାଇଁସିକାର ସେବକ ସେବା ୧୮**

ଏ ତିନିଧୂପବେଳେ ଏ ତିନିବେଢ଼ାବେଳେ ଜଗନ୍ନାଥବଲ୍ଲଭ ଅବକାସ ବଡ଼ସିଂଘାର ଅବକାସ ନାନା ପରବ ଯାତ୍ରାମାନରେ ନାଟ ଖଟଣିବେଳେ ବଇଂସି ବାଇବ ॥

**ଚଉସଠି ସମ୍ପ୍ରଦା ଜ୬୪୮ଯ ଏ ନାଚୁଣି ଜ୨୦ଯ**

ଏ ତିନି ଦୀପ ବେଳେ ଜଗମୋହନ ମଣ୍ଡପରେ ଜେଉଁ ସମୟରେ ସଙ୍ଗିତ ଶାସ୍ତ୍ର ପ୍ରମାଣେ ଜେଉଂ ନାଟ ତାହା ନାଚିବ । ଜଗନ୍ନାଥବଲ୍ଲଭ ଅବକାସରେ ରାତ୍ର ବଡ଼ସିଂଘାର ଅବକାସରେ ଜେଉଂ ନାଟ ତାହା ନାଚିବ । ପରବ ଯାତ୍ରାମାନରେ ଖଟଣି ଖଟୀବ । ... ଯାତ୍ରା ୧୫ ଦିନ ଭଉଂରି ନାଟ ନାଚିବ । ଏ ନାଟ ମେଳ ଗାଏ ଜ୧୦ ଏ ନାଟବେଳେ ଜେଉଁ ନାଟକୁ ଜେଉଁ ସମୟରେ ଜେଉଁ ଗୀତ ସେ ଗିତ ଗାଇବ, ***ତାଳଧାରୀ*** ସମ୍ପ୍ରଦା ଜ୪ ତାଳ... ***ଭିତର ଗାଏଣି*** ସଂପ୍ରଦା ଜ୬ ଭିତର ଗମ୍ଭରା ଦୁଆରେ ସିଂଘାର ଅବକାସେ ପୁଷ୍ପ ଆଞ୍ଜୁଂଳି ବିଜେ ବେଳେ ଗିତ ଗାଇବ । ଚନ୍ଦନଯାତ୍ରା **[113b]** ଚାଳିସି ଦିନରେ ଜାତ୍ରା ବେଳରେ ଗିତ ଗାଇବ । ଏ ଚାଳିସିଦିନ ରାତ୍ର ଆଳଟ ଲାଗିବେଳେ ଜଗମୋହନ ଦୁଆର ଭିତର କଳାପାବଛଠାରେ ଗିତ ଗାଇବ, ଜେଉଁ ସମୟରେ ଜେଉଁ ରାଗମାନରେ ଗିତ ଗାଇ ଜୋଗାଇ ସେ ତାନମାନରେ ଗିତ ଗାଇବ । ଜଗନାଥବଲ୍ଲଭ ଅବକାସ ବେଳେ ଭିତର କଳାପାବଛଠାରେ ଗିତ ଗାଇବ । ***ଜନ୍ତଧାରି*** ଜ୪ ***ରବାବି*** ଜ୨ ଗାଏ ଜ୬ ଏ ପାହାନ୍ତି ଅବକାସେ ରାତ୍ର ପୁଷ୍ପ ଆଞ୍ଜୁଂଳି ବିଜେବେଳେ ଚନ୍ଦନଯାତ୍ରାମାନରେ ଏ ଭିତର କଳାପାବଛଠାରେ ବାଇବ, ଯାତ୍ରାମାନରେ ବାଇବ । ***ଚାମରଧାରି*** ସମ୍ପ୍ରଦା ଜ୪ ***ସୁନାରପାବେତଧାରୀ*** ସମ୍ପ୍ରଦା ଜ୨ ଗାଏ ଜ୧୧ ଏମାନେ ତିନି ଧୂପ ଜଗନ୍ନାଥବଲ୍ଲଭ ଅବକାସେ ବଡ଼ସିଂଘାର ଅବକାଶ ପୁଷ୍ପ ଆଞ୍ଜୁଂଳି ବିଜେବେଳେ ଚନ୍ଦନଯାତ୍ରା ଦିନମାନରେ ନାନା ପରବଯାତ୍ରାରେ ମଧ୍ୟ କରି ଏ ଜେ ଜାହାରେ ସେବାମାନ ଖଟିବେ । ଏ ପ୍ରକାରେ ଚଉସଠି ସଂପ୍ରଦା ପାଳିମୁଳକରି ସେବା ଖଟିବେ । ଦେବିପରବ ନିମିତେଂ ଥୋକାଏ ସମ୍ପ୍ରଦା ରାଜକଟକ ଯିବେ ॥

**ମିନ ନାଏକ ସେବକ ସେବା ୧୯**

ନିତ୍ୟାନି ନାଟ ଖଟଣୀ ନିମିତେଂ ସଂପ୍ରଦାମାନଙ୍କୁ ଜେ ଜାହା ଘରମାନକଂରୁ ଆଣି ଦେଉଲେ ପରବେଶ କରିବ । ନାନା ପରବ ଯାତ୍ରା ନାଟ ଖଟଣିମାନ ନିବୋଲଣା କରିବ । ପରିକ୍ଷାକୁ ସଂପ୍ରଦାମାନେ ଭେଟବେଳେ ଅବଧାନ କରାଇବ । ସଂପ୍ରଦାମାନର ବୋଲଣା ହୋଇଲେ ଏ ଦଣ୍ଡମଣ୍ଡ ପାଇବ ॥

**ଗିତଗାଣ ସେବକ ସେବା ୧୯**

ପାହାନ୍ତି ଅବକାସେ ଜଗନ୍ନାଥ ବଲ୍ଲଭ ଅବକାସେ ବଡ଼ସିଂଘାର ଅବକାସେ ପୁଷ୍ପ ଅଂଜଳି ବିଜେ ବେଳେ ନାନା ପରବ ଯାତ୍ରାମାନରେ ମଧକରି ଜେଉଁ ଅବକାଶରେ ଜେଉଁ ରାଗରେ ଜେଉଁ ଗିତ ଗାଇ ସେ ଗିତ ଗାଇବ । ସ୍ୱର ଭଙ୍ଗକରି ଗିତ ସୁଣାଇବ ଏ ଜଗମୋହନ ଦ୍ୱାର ଭିତର କଳା ପାବଛଠାରେ ଗୀତ ସୁଣାଇବ ।

**[114a] ଜନ୍ତକାର ସେବକ ସେବା ୧୯**

ଏ ପାହାନ୍ତି ଅବକାସେ ଦୁଇ ପହର ଧୂପ ବଢ଼ିଲା ଉତାରେ ଜଗନ୍ନାଥ ବଲ୍ଲଭ ଅବକାସେ ରାତ୍ର ବଡ଼ ସିଂଘାର ଅବକାସେ ପୁଷ୍ପ ଅଂଜଳି ବିଜେବେଳେ ଏ ସଙ୍ଗିତ ଶାସ୍ତ୍ର ପ୍ରମାଣରେ ଜେଉଁ ଅବକାସରେ ଜେଉଁ ତାନରେ ବାଇ ଜୋଗାଇ ସେ ତାନରେ ଜଗମୋହନ ଦୁଆରେ କଳାପାବଛଠାରେ ବିଣା ବାଇବ ॥୦॥

**ରଂବା ସେବକ ସେବା ୧୯**

ଏ ପାହାନ୍ତି ଅବକାସେ ଦୁଇ ପହର ଧୂପ ବଢ଼ିଲା ଉତାରେ ଜଗନ୍ନାଥବଲ୍ଲଭ ଅବକାସେ ରାତ୍ର ବଡ଼ସିଂଘାର ଅବକାସେ ପୁଷ୍ପ ଅଂଜଳି ବିଜେ ଅବକାସେ ଏତେଠାରେ ଜଗମୋହନ ଦୁଆରେ କଳାପାବଛଠାରେ ବାଇବ । ନାନା ପରବ ଯାତ୍ରାମାନରେ ବାଇବ, ସଙ୍ଗୀତ ଶାସ୍ତ୍ର ବିଧି ପ୍ରମାଣେ ଜେଉଁ ଅବକାଶରେ ଜେଉଁ ତାନରେ ବାଇ ଯୋଗାଇ ସେ ତାନରେ ବାଇବ । ଶାସ୍ତ୍ର ନିଷେଧ କରି ନ ବାଇବ ॥

**ବଢ଼ଇ ମାହାରଣା ସେବକ ସେବା ୧୯**

ଏ ବିଶ୍ୱକର୍ମା ପଣ ସେବାକୁ ଏ ମାହାଅଣସର ... ହୋଇଂ ଶ୍ରୀ ମୂର୍ତ୍ତି ଘଟଣା ହୋଇଲେ ଭଟମିଶ୍ରମାନଙ୍କ ସଙ୍ଗତେ ଜାଇ ଦାରୁବୃକ୍ଷ ଛେଦନକରି ଘେନାଇଆସିବ, ଦଇତାପତିମାନକଂ ସଙ୍ଗତେ କର୍ମକୁଟୀଘରେ ପସି ଦାର ପ୍ରତିମାମାନ ନିର୍ମାଣ କରିବ । ସପ୍ତାବରଣ ଲାଗି ହୋଇବା ବେଳକୁ ଏ କର୍ମକୁଟୀଘରେ ନ ପସିବ । ଶ୍ରୀଗୁଣ୍ଡିଚାଯାତ୍ରା ରଥଘଟଣ ଅନକୂଳରେ ବ୍ରାହ୍ମଣମାନଙ୍କ କର୍ମ ବଢ଼ିଲା ଉତାରେ ଏ ପୂଜାପାଇଁ ଏହା ଶସ୍ତ୍ର ଶାସ୍ତ୍ର ପୂଜା କରି ଏ ଦାର ଛେଦନ କରିବ । ଏ ସଂଗତେ ଆଉ ଦୁଇ ରଥ ଦୁଇ ମାହାରଣା ଦାର ଛେଦନ କରିବେ । ଏ ଉତାରେ ବିଶ୍ୱକର୍ମା ମାହାରଣା ମୁଖ୍ୟକରି ୩ ମହାରଣା ରଥ ଘଟଣ କରିବେ । ଏମାନକଂର ଜାହାର ଜଣେ ସୁତାପାଢ଼ୀ ରଥମାନଙ୍କର ଜେତେ

ଦୀଘ ପ୍ରତି ସଲଖ ବାକଂ କହିବ । ଜେତେକ ଦେଉଳରେ କାଠ କମ ଆଡ଼ତି ସବୁ ଏ ବଢ଼ଇ ମାହାରଣାମାନେ ଗଢ଼ିବେ ।  ରୋସକୁ ଡ଼କାଂ କାଠଚଟୁକୁ ରୋସ ସରଘରୁ ନଡ଼ିଆ ସଢ଼େଇ ସୁଆଂସରୁଂ କାଠଚଟୁକୁ କାଠନେଇଂ ଉଳୁକରି ଖଟିବ । [114b] ଯାତ୍ରାମାନରେ ସାହାଲାଘର ଚାର ମଣ୍ଡଣି ଗୟଳକାଠ ଚାରକାଠମାନ ସଜକରି ପୋତାଇବ । ଦେବସ୍ନାନ ଯାତ୍ରା ଶ୍ରୀଗୁଣ୍ଡିଚା ପହଣ୍ଡି ବିଜେ ନିମତେଂ ସିଂଘାସନଠାରେ ଚାରପଟା ବନ୍ଧାଇବ ।  ଖଟ ପଲକଂ ଖଟଦୋଳି ବିମାନ ଚଉଦଳ ମଧକରି କାଠରେ ଜେତେ କାରବାର ତେତକ ଗଢ଼ିବ ।  ପହଣ୍ଡିବିଜେ ନିମିତେଂ ବଉଳ କାଠର ସେହ୍ନାପଟା ବାହୁଟୀପଟା ଗଢ଼ିବ । ବାହାର ଦେଉଳ ଦେବତାମାନକଂର ବିମାନମାନ ମୁଖ୍ୟକରି ଜେତେ ଆଡ଼ତି ସବୁ ଗଢ଼ିବ ।  ଶ୍ରୀଗୁଣ୍ଡିଚାଯାତ୍ରା ଦୁଇ ବିଜୟରେ ରଥମାନେ ସଲଖେ ବିଜେ କରିବା ନିମିତେଂ ଏ ତିନି ମାହାରଣା ତିନିରଥରେ ରହିବେ ରଥକାଠମାନର ଜେତେ ଚଂଛାକାଠ କଟି ଖୁଦରକାଠ ଚାର କାଠ ଏଥୁଁ ଅଧେ କୋଠକୁ ଦେବ ଏ ଅଧକ ଏ ନେମ  । ଅସିଣ ମାସେ ଦେବିପରବରେଂ ବାହାର ବିଜେ ନିମିତଂ ରଥ ଗୋଟିଏ ଗଢ଼ିବ । ଏ ଉତାରେ ସୂର୍ଯବଂସ ରଜାମାନକଂ ଦିନରୁ  ରାମଜନ୍ମଯାତ୍ରା ବାହାର ପ୍ରସ୍ତାପ ମାନର କାଠ କମ ଏହାସବୁ ଗଢ଼ିବ ।  ଶ୍ରୀଗୁଣ୍ଡିଚା ଯାତ୍ରା ଖଦି ବିଂଚି ଏ ତିନି ଖଦିନେବ । ଖଟଣିକି ଭଣ୍ଡାରୁ ଚନ୍ଦନକାଠମାନ କାଟିଦେବ ।

### କରତି ମାହାରଣା ସେବକ ସେବା ୧୯

ଏ ଦେଉଳରେ ଜେତେ କାଠ କରତି ରଜୁ ହୋଇବ ସେ କାମମାନକୁଂ ଜେତେ କରତକାଠ ଲୋଡ଼ା ତାହା କରତିବ ।  ଶ୍ରୀଗୁଣ୍ଡିଚାଯାତ୍ରା ରଥକାଠମାନ କରତିବ । ପରବ ଯାତ୍ରାମାନରେ ଜେ ଲୋଡ଼ା ହୋଇବ ସେ କାଠ କରତିବ ॥୦॥

### ବଗଡ଼ାପିଠା ସୁଆର ସେବକ ସେବା ୧୯

ଏ ବଗଡ଼ା ପିଠା କରିବ, ବଡ଼ ସାନ ଡ଼ାଳିମ୍ବ ସୋଧୁଅ ଖଇରିଚୁର ମରିଚିଲଡ଼ୁ ହରିବଲଭ ମାଠପୁଳି କରି ଛେନା ଗଜମଣ୍ଡା ବଡ଼ବଡ଼ା ସାନବଡ଼ା ଅପମାଲୁ ପାପୁଡ଼ି ଚିଟାଉ ଗଜା ଜନ୍ମଯାତ୍ରା ସାତପୁରି ମଧକରି ଜେତେ ବଗଡ଼ାପିଠା ତାହା କରିବ । ପରବଯାତ୍ରାମାନରେ ଜେତେ ବଗଡ଼ା ପିଠା ତାହା କରିବ । ନିତ୍ୟାନି ଜଉଁ ଭୋଗରେ ଜେଉଂ ପିଠା ଭିଆଣ ସେ ପିଠାମାନ ତେଲାଉଣିରେ ପୁରାଇ ଲୁଗା ଗୁ[115a]ଡ଼ାଇ ନେଇଂ ପନ୍ତିରେ ବସାଇଂ ମାହାସୁଆରକୁ ଗଣାଇଦେବ । ଭୋଗ ରଂଧା ସରିଲେ ରୋସପାଇକକୁ ଝଡ଼ା ସୋଧା ଦେଇଂ ବାହାର ହୋଇଂଜିବ ॥୦॥

### ମାହାସୁଆର ସେବକ ସେବା ୧୯

ଏ ରୋସରେ ଥାଇଂ ଭାତ ତିଉଣ ଖିରି ପିଠା ରନ୍ଧାଇବ ।  ହରି ବଲଭ ଟାଟ... ବସି ମାହାସୁଆର ରାନ୍ଧିବ । ... ... ବାଘମୁଂହା ବାନ୍ଧି ପନ୍ତିରେ ସୁଆରଠାରେ

ଗଣମଣ କରି ଭାତ ତିଉଣ ଖିରି ପିଠା ଗୋଟୀକା ପଣା ବସାଦହି ପଇଡ଼ ଅମୃତବାନି ଘିଅ ଖରଡ଼ାଲୁଣ ଅଦାପାଚେଲି ମଧ କରି ନାନା ପଦାର୍ଥମାନ ଜେତେକ ଭୋଗରେ ଉଠିବ ସବୁ ଗଣମଣ କରି ମୁଣୋହି ସମୁଖେ ଜେଉଁ ପଦାର୍ଥ ଜେଉଁ ଉତରେ ମୁଣୋହି କରିବାର ସେ ପ୍ରକାରେ ପନ୍ତି ବାଢ଼ିବ ।।୦।।

**ସାରେଆପିଠା ସୁଆର ସେବକ ସେବା ୧୯**

ଏ ସାରେଆ ପିଠା କରିବ ବଡ଼ ନାଡ଼ି ସାନ ନାଡ଼ି କାକରା ଗୋଟିକାକରା ସରକୁମ୍ଭା ଚଡ଼ଇନିଦା ଛେନାଲଡୁ ଛେନାକାକରା ଆରିସା ସରପୁଳି ଘୋଳବଡ଼ା ତିପୁରି କପୁରକେଳି ସୁଆର... ପାରିଜାତକ କଇଳପୁଳି ଏତେ ପିଠା ମଧକରି ଜେତେ ସାରଆପିଠା ସବୁ ପିଠା କରିବ । ଏ ପିଠାମାନରେ ରୋସ ସରଘରରଂ ଲବଙ୍ଗ ଜାଇଫଳ ଅଳାଇଚ ମରିଚ କପୁରଖଣ୍ଡମାନ ଘେନି ଏ ପିଠାମାନରେ ମିଶ୍ରିତ କରିବ । ଏ ପିଠାମାନ ଜେଉଁ ଭୋଗ ମୁଣୋହି ବେଳକୁ ଜେଉଁ ପିଠା ଭିଆଣ ସେ ପିଠାମାନ ତେଲାଉଣି ତାଡ଼ମାନରେ ପୁରାଇଂ ଏ ଉପରେ ଲୁଗା ଘୋଡ଼ାଇବ ଏଥିକି ଖରାବରସା ପାଣି ନ ପଡ଼ିବ । ଏ ପ୍ରକାରେ ବହିନେଇ ପନ୍ତିରେ ବସାଇଂ ମାହାସୁଆରକୁ ଗଣମଣ କରିଦେବ । ପରବଯାତ୍ରାମାନରେ ସାରେଆପିଠା ମାନ କରିବ । ଏ ଭୋଗ ବହିନେମାବେଳକୁ ତୁଣ୍ଡରେ ବାଘ ମୁଂହା ଲୁଗା ବାନ୍ଧିଥିବ କଥା ନ କହିବ । ଏ ଭୋଗ ରାନ୍ଧିସାରି ବାହାର ହୋଇଂ ଜିବାବେଳକୁ ରୋସୋ ପାଇକକୁ ସୋଧାଦେଇ ଜିବ ।

**ମାହାସୁଆର ସେବକ ସେବା ୧୯**

ଏ ରୋସରେ ଥାଇଂ ରାତ ତିଉଣ ଖିରି ପିଠା ରନ୍ଧାଇବ । ହରିବଲଭ ଟାଟ ପିଠା ବସି ତାହା ସବୁ **[115b]** ବାଘମୁଂହା ବାନ୍ଧି ପନ୍ତିରେ ସୁଆରଠାରେ ଗଣମଣ କରି ଭାତ ତିଉଣ କରି ପିଠା ଗୋଟିକା ପଣା ବସାଦହି ପଇଡ଼ ଅମୃତବାନି ଘିଅ ଖରଡ଼ାଲୁଣ ଅଦାପାଚେଲି ମଧ କରି ନାନା ପଦାର୍ଥମାନ ଜେତେକ ଭୋଗରେ ଉଠିବ ସବୁ ଗଣମଣ କରିଘେନି ମୁଣୋହି ସଂମୁଖେ ଜେଉଁ ଭୋଗରେ ଜେଉଂ ଉତାରେ ମୁଣୋହି କରିବାର ସେ ପ୍ରକାରେ ପନ୍ତି ବାଢ଼ିବ । ପୁଜା ଭୋଗ ମୁଣୋହି ବେଳକୁ ଖଦି ଜେତେ ବିଞ୍ଚୁଥିବ, ଭୋଗ ମୁଣୋହି ବଢ଼ିଲା ଉତାରେ ଭିତର ବଢ଼ା ସେବକକୁ ଭୋଗ ଭାତ ଖିରି ପିଠା ଜେତେ ପଦାର୍ଥ ଉଠିଥିବ ସବୁ ଗଣମଣ କରିଦେବ ହରି ବଲଭ ଟାଟ ମାହାପ୍ରସାଦ ... ପ୍ରସାଦ ହୋଇଂ କଟକ ଚଳା ହୋଇ ତାହା ପନ୍ତିରଂ ବହି ମାହାପ୍ରସାଦମାନରେ ଉଲାଖମାନ ବାନ୍ଧି ଏହା ମୁଦିରେ ମୁଦଦେଇଂ ପ୍ରସାଦବଡୁ ମୁଳେ ଗଣମଣ କରିଦେଇଂ ଚଳାଇଦେବ । ଜାତ୍ରାମାନରେ ଜଗମୋହନ ଦୁଆର ଦେଇଂ ସୁଆରମାନକୁଂ ଘେନି ଭୋଗ ଆଣିବା ବେଳକୁ ଧରାହୋଇଂ ଘଣ୍ଟ କାହାଳି ବାଜି ଭୋଗ ଆଣି ପନ୍ତିରେ ବାଢ଼ିବ । ମକର ଯାତ୍ରାବେଳେ ଗୁଡ଼ ଚାଉଳ ଦେଉଳ ବେଢ଼ା ବୁଲାଇଂ ଆଣି ଛାମୁରେ ବାଢ଼ିବ । ରାମଜନ୍ମ ଯାତ୍ରା କୃଷ୍ଣଜନ୍ମ

ଯାତ୍ରା ବାମନଜନ୍ମ ଯାତ୍ରା ଏଥିରି ଓଖରକୁ ଲବଙ୍ଗ ଜାଇଫଳ ଅଳାଇଚ ସୁଣ୍ଠି ପିପ୍ପଳୀ ମରିଚ ବଡ଼ଜିରା ଚୁରି ଛାଣି ଘିଅ ଖଣ୍ଡକପୁର ମିସାଇ କରି ଓଖର ବାନ୍ଧିବ । ଓଖର ଯାତ୍ରାବେଳେ ମୁଣୋହି କରିବାବେଳକୁ ଖଟିବ । ରାଜ ପ୍ରସାଦ ଓଖର ମୁଦଦେଇଂ ପ୍ରସାଦବଡୁ ମୁଳେ ଚଳାଇବ । ଜେଉଁ ଋତୁରେ ଜେଉଁ ଫଳମାନ ଆମ୍ବ ପଣସ ମଧ କରି ଜେଉଁ ଫଳମାନ ମୁଣୋହିକି ଜୋଗାଇ ସେ ଫଳମାନ ... ହୋଇଥିଲେ ଶୁଦ୍ର ସୁଆର ସେ ଫଳମାନ ବାଛି ଧୋଇଦେଲା ଉତାରେ ତାହା ଆଣି ମୁଣୋହି ବେଳକୁ ଭୋଗବୁହା ସରିରେ ଏ ମାହାସୁଆର ବୋଇଲେ ପାଣିଛଡ଼ା ପଣ୍ଡା ଦୀପ ଆଳତୀ ଦେବ । ଏ ଭୋଗମାନର ଭାତ ତିଉଣ ପିଠା ଏମାନ ସିଝା କଂଚା ପୋଡ଼ା ଅଲଣା ଘିଅ ଗୁଡ଼ ଖଣ୍ଡ ଗନ୍ଧିଅ**[116a]**ଣା ହୋଇଥିଲେ ଏ ବୋଲଣା ପାଇବ । ରାଜ ଜୋଗଣକୁ ଜେତେ ପଦାର୍ଥ ଭୋଗ ମୁଣୋହିରୁ ଜିବ ସବୁ ଏ ଦେଖି ମୁଦଦେଇଂ ଚଳାଇବ । ଏ ରାଜଜୋଗଣ ମାହାପ୍ରସାଦରେ ଜେବେ ବୋଲଣା ପଡ଼ିବ ଏଥିରି ଭଲମନ୍ଦ ବୋଲଣା ଏହାକୁ ଲାଗିବ ।।

**ଖିରି ସୁଆର ସେବକ ସେବା ୧୯**

ଏ ଖିରି ଖିରିସା ରାନ୍ଧିବ । ଏ ଭୋଗମୁଣୋହି ବେଳକୁ ବହିନେଇ ଖଟିବ । ଏଥିରି ଧୁଆଁ ଅଲଣା ହୋଇଲେ ଏ ବୋଲଣା ପାଇବ । ଏ ଖିରି ଦୁଧ ପାଣି ହୋଇଥିଲେ ଏଥିରି ଦଣ୍ଡମଣ୍ଡ ଗଉଡ଼ ନିଯୋଗ ବିଶୋଇ ପାଇବ ।।

**ତିଉଣ ସୁଆର ସେବକ ସେବା ୧୯**

ଜେଉଁ ଋତୁରେ ଜେଉଁ ମୁଣୋହି ଯୋଗ୍ୟ ସାଗମୁଗ ଲାଫଡ଼ା ବଡ଼ି ତିଉଣ ଦୁଧମହୁର ଆଳୁଭଜା ଗୋଟାକଦଳି ଭାଜି ଏହାକୁ କଦଳି ତଳିଆ ବୋଲି ଚାରୁପାଣି କାଙ୍ଜିଂ ସାକରା ଏ ତିଉଣମାନ ରାନ୍ଧି ବହିଆଣି ପନ୍ତିରେ ବାଢ଼ିବ । ଯାତ୍ରାମାନରେ ଜେତେ ଅଧିକ ତିଉଣ ହୋଇବ ତାହା ରାନ୍ଧିବ ।

**ପଣା ସୁଆର ସେବକ ସେବା ୧୯**

ଅମୃତକୁଣ୍ଡ ଛେନାପଣା ସରପଣା ପାଂଚପଣା ଏ ପଣାମାନ ଗୋଳି ବହିଆଣି ପନ୍ତିରେ ବାଢ଼ିବ । ପର୍ବଯାତ୍ରାମାନରେ ଜେତେ ଅମୃତକୁଣ୍ଡ... ବାସ ପାଣି ହୋଇବ ତାହା ରଜୁ କରିବ । ପନ୍ତିରେ ମାହାସୁଆରକୁ ଗଣାଇଦେବ ।।

**ପାଚେଲି ସୁଆର ସେବକ ସେବା ୧୯**

ଏ ଅଦା ଚାଂଛି କାଟି ଟଭା ପାଣିରେ ପକାଇ ଖରଡ଼ା ଲୁଣ ପକାଇ ସରାରେ ପକାଇ ଧୁପଭୋଗ ମୁଣୋହି ବେଳେ ପନ୍ତିରେ ଆଣି ବସାଇ ମାହାସୁଆରକୁ ଗଣାଇଦେବ । ପରବଯାତ୍ରାମାନରେ ଜେତେ ପାଚେଲି ହୋଇବ ସବୁ ନିବୋଲଣା କରି ଖଟିବ ।

### ତୋଳାବଢୁ ସେବକ ସେବା ୧୯

ଏ ବାଘମୁଂହା ବାନ୍ଧି ଜେତେ ଭାତ ସବୁ ଭାର କରି ବହିଆଣି ହାଣ୍ଡିଭାତ କୁଡୁଆଭାତ ସବୁ ଆଣି ମାହାସୁଆରକୁ **[116b]** ଗଣାଇ ଦେବ । ପର୍ବ ଯାତ୍ରାମାନରେ ଜେତେ ଉପାଧି ଭାତ ହୋଇବ, ସବୁ ବହି ଆଣିମ ॥୦॥

### ତଳିବଢୁ ସେବକ ସେବା ୧୯

ଏ ହାଣ୍ଡିଭାତ କୁଡୁଆଭାତମାନ ତଳେ ପକାଇ ସାନ ବଡ଼ କରି ଭିଆଣ ପ୍ରମାଣେ ଗୋଟା ଭାତ ରାଂଧିବେ । ଏ ଭାତମାନ ମାହାସୁଆର ମୂଳରେ ଗଣାଇ ଦେବ । ପରବ ଯାତ୍ରାମାନରେ ଜେତେ ଗୋଟା ଭାତ ହୋଇବ ତାହା ବାନ୍ଧିବ ॥୦॥

### ପନ୍ତିବଢୁ ସେବକ ସେବା ୧୯

ଏ ପନ୍ତିରେ ଭାତମାନ ଗଣମଣ କରି ସଲଖୀ ବସାଇବ । ଶଙ୍ଖପନ୍ତି ଚକ୍ରପନ୍ତି ପଦ୍ମପନ୍ତି ଗଦାପନ୍ତି ଚାରିପନ୍ତି କରି ବସାଇବ । ଏଥକୁ କାଳାନ୍ତରେ ଏ ପନ୍ତିମାନଙ୍କର ନାମ ଆନ ଆନ ହୋଇ ଥାଇ ବୋଲାଇଲା ଚକ୍ରପନ୍ତି ଉଚିନାପନ୍ତି ଦଣ୍ଡପନ୍ତି ଏକମୁଠିଆ ପନ୍ତି ପାଂଚଆଙ୍ଗୁଳିଆ ପନ୍ତି ପାଣିନଳା ପନ୍ତି ଏ ପ୍ରକାରେ ସାତ ପନ୍ତି ବୋଲାଇଲା । ଏ ପନ୍ତିମାନ ବସାଇବ, ଭୋଗମୁଣୋହି ସଂପୂର୍ଣ୍ଣେ ପନ୍ତିବଢୁ ବୋହରା ସେବକମାନ ଭାର ବୋହୋରଣ ଖଟା ପ୍ରମାଣେ ବଏ ଭାତ ଏ ସବୁ ଭାତ ବଏ ଦେବ । ଏ ଭାତ ବଏ ପ୍ରକରଣମାନଙ୍କୁ ବୁଝାଇବ ।

### ପରିବାର ସେବା ନିଜୋଗ ୧୯

### ଗୁହାରିଆ ପ୍ରଧାନି ବ୍ରାହ୍ମଣ ସେବକ ସେବା ୧୯

ଏ ପରିକ୍ଷା ବେହରଣ ଜଗିଂଥିବ । ବ୍ରାହ୍ମଣ ସେବକମାନଙ୍କୁଂ ଲୋଡ଼ା ହକରା ହୋଇଲେ ପରିକ୍ଷା ବୋଲେ ହକରା କରି ଘେନି ଆସିବ । ଏ ସେବକର ଦୋଷ ହୋଇଲେ ପରିକ୍ଷା ବୋଲେ ଏ ଦଣ୍ଡମଣ୍ଡ କରିବ । ଏ ସେବକମାନର ମୁଖ୍ୟକରି ଜେତେ ଲୋକର ହାରି ଗୁହାରି ସଭା ମୁରଡ଼ି ପଡ଼ିବ, ଏଥକୁ ପରିକ୍ଷା ବୋଇଲେ ସନ୍ୟାସି ମୁଖ୍ୟ କରି ଜେତେଲୋକ ଦେସ ବୁଝନ୍ତି ସମସ୍ତଙ୍କୁଂ ଘେନିଆସି ନୃସିଂହନାଥ ମଣ୍ଡପେ ବସାଇଂ ଧର୍ମଶାସ୍ତ୍ର ପ୍ରମାଣେ ନ୍ୟାୟ ବୁଝାଇଲା ଉତାରେ ହାର ଜିଣ ପରିକ୍ଷା ଛାମୁରେ କହିବ । ଏଥକୁ ପରିକ୍ଷା ଜେମନ୍ତେ ବୋଲିବେ ତେମନ୍ତେ କରିବ । କୋଠଛତ୍ର ଭୋଗ ନିର୍ମାଲ୍ୟମାନ ଦିନ ଅନାଥମାନଙ୍କୁଂ ବଏ ଦେବ । **[117a]** ସେବକମାନର ମୁକ୍ଷ କରି ସେବା ଡ଼ିହବାଡ଼ି କିଣା ବିକା ହୋଇଲେ ଦେସ ବସାଇଂ ଦେସ କରଣ ହାଥରେଂ ଦେସପତ୍ର ଲେଖାଇ ଦେସଲୋକକଂ ହାଥରେ ସନ୍ତେକ ଦେଆଇଂ ପରିକ୍ଷାକୁ କହିବ । ପରିକ୍ଷା ବୋଇଲେ ଖାତକକୁ ଦେସପତ୍ର ଦେବ । ରଜାକଂ କାମନାର୍ଥେ ଭଟମିଶ୍ରମାନଙ୍କୁଂ ଦେସ ବ୍ରାହ୍ମଣମାନଙ୍କୁଂ ବରଣବାରଣ ହୋଇଲେ ଏମାନଙ୍କୁଂ ଆଣି ଦେଉଲେ କର୍ମମାନ

କରାଇବ । ଏ ଆଡ଼ତି ମାନଙ୍କୁ ଜେ ଉପକରଣ ସାମିଗ୍ରି ଲାଗିବ ତାହା ପରମେଶ୍ୱରଙ୍କ ପଦାର୍ଥ ବାହାରେ ପରିକ୍ଷା ମୁଳେ ଥିଲା କୋଠ ଆମୁଳର ନେଇଂ ଖଟିବ । ଏ କର୍ମମାନ ସଂପୂର୍ଣ୍ଣେ ରାଜାଙ୍କ ଆସଂସା ଚାଳ ଘେନି ଆସିଂ ମୁଦ ଦେଆଇଂ ଫୁଲବଡୁ ହାଥେ ରାଜ କଟକକୁ ଚଳାଇବ । ପରବ ଯାତ୍ରାମାନରେ ଅଂକନାଟ ବହୁରପକୁ ସାହୀମାନଙ୍କ ଆଖଡ଼ାମାନରେ ଭୂମିକାମାନକୁଂ ଜାଇଂ କାଛେଣି କଛାଇଂ ଭୂମିକାମାନକୁଂ ପଇଠି କରାଇବ । ହାରି ଗୁହାରି ବୁଝିବାକୁ ପରିକ୍ଷା ବୋଇଲେ ଦେସ ସନ୍ୟାସି ମୁଦରହସ୍ତ ପ୍ରଧାନ ପତି ମାହାନ୍ତି କରସାପୁତ ଖୁଣ୍ଟିଆ ଏମାନକୁଂ ଆଣି ମୁକ୍ତମଣ୍ଡପେ ବସାଇଂ ହାରି ଗୁହାରି ବୁଝିବ । ସ୍ନାନଯାତ୍ରା ଶ୍ରୀଗୁଣ୍ଡିଚା ଯାତ୍ରା ସେହ୍ନାଲାଗି ନିମିତେଂ ଦେଇତାପତିକି ଏହା ଘରୁ ହକରା କରି ଆଣିବ ॥

### ଚକରିଆ ଲେକାଂ ସେବକସେବା ୧୮

ଏ ପରିକ୍ଷାକୁ ସେବା କରିବ, ପରିକ୍ଷା ଜହିଁକି ବରଗିବ ତହିଁକି ଜିବ । ପରିକ୍ଷାଙ୍କ ଆଗେ ମଣିମା ଡ଼ାକ ପାଡ଼ିବ । ପରମେଶ୍ୱରଙ୍କ ସେବକମାନଙ୍କୁ ଭେଟ ଅବଧାନ କରାଇବ । ପରିକ୍ଷା ବେହୋରା ତଳିଓକ୍ଷ ଦେଉଳେ ନ ଥିଲେ ଭଣ୍ଡାରଂ ବଏ ଦାଏ ପଡ଼ିଲେ ପରିକ୍ଷା ହାଥେମୁଦ ମୁଦି ନେଇଂ ପଦାର୍ଥ ବାହାର କରାଇଂ ମୁଦଦେଇ ପରିକ୍ଷା ହାଥେ ଆଣି ମୁଦ ମୁଦି ଦେବ । ଭୋଗ ନିଯୋଗରେ ସମାନ ପରିକ୍ଷା **[117b]** ଦେଖିବା ନିମିତେ ବୁଲି ବାହାର ହୋଇଲେ ଏ ଦେସମାନଙ୍କୁ ସାଢ଼ୀ ବଏକୁ ଭଣ୍ଡାର କିରଣ ଲୁଗାମାନର ବାହାର କରି ଏ ବଏ ଲୁଗା ମୁଣା ପରିକ୍ଷା ଗହଣେ ଘେନିଥିବ । ବଏ ବାହାର ଲୁଗା ରହିଲେ ଭଣ୍ଡାରେ ଆଣି ଲୁଗା ମଣାଇଂ ଦେବ । ମକର ଯାତ୍ରା ଦିନେ ଥାଉଁ ରାତ୍ରେ ପରିକ୍ଷା କଳାରଥଙ୍କ ବେହୋରଣେ ମକର ଚଉରାସି ଭୋଗ ବିସେଇ ଅଧାଦରସୋଆବେଳକୁ ଦିଉଡ଼ି ଆତହୁଁ ଦିଉଡ଼ି ଧରି ପରିକ୍ଷା ଛାମୁରେ ଆଧି ଦରୋସୁଆ କରିବ । ବଇଠାହୁଳାକୁ ଏ ଆଧି ସମଧର ସାଚିଖଣ୍ଡ ମାରି ଦରସୋଆ କରିବ । ହାରି ଗୁହାରି ଲୋକେ ପରିକ୍ଷା ଛାମୁରେ କଲେ ପରିକ୍ଷା ବୋଲେ ଦେସ ସନ୍ୟାସି ମୁକ୍ଷକରିଂ ଦେସଲୋକଙ୍କୁ ଆଣି ନୃସିଂହନାଥ ମଣ୍ଡପରେ ବସାଇଂ ଏଥିରି ହାର ଜିଣ ଜାଇଂ ପରିକ୍ଷା ଛାମୁରେ କହିବ । ସେବାବିକା ଡ଼ିହବାଡ଼ି ବିକାକୁ ଦେସ ଲୋକ ତହୁଂ ଦେସପତ୍ର ଘେନି ପରିକ୍ଷା କହିଲେ ଖାତକକୁ ପତ୍ରଦେବ । ଦେବସ୍ନାନ ଯାତ୍ରା ଶ୍ରୀଗୁଣ୍ଡିଯାତ୍ରା ପରମେଶ୍ୱରଙ୍କ ସେହ୍ନା ଲାଗି ନିମିତେଂ ଦେଇତାପତିମାନଙ୍କୁ ଘରଠାରୁ ହକରାକରି ଆଣିବ । ସାଢ଼ି ବଏ ହୋଇଲେ ପରକରଣମାନଙ୍କ ସାଢ଼ୀ ବାହାରେ ସେବକ ସାଢ଼ି ହୋଇଲେ ପରିକ୍ଷା ହାତରୁ ଘେନି ସାଡିମାନ ଦେବ । ପୁଷ୍ପଆଂଜଳି ବଢ଼ିଲେ ଏହା ହାଥ ସୁନାଚକ୍ର ରୁପାଚକ୍ର ଭଣ୍ଡାରେ ବାହୁଡ଼ା କରିବ । ଆରଦିନର ମଣି ଘେନିବ । ଏ ଚକ୍ରେ ବାନା ପୁରୁଣା ହୋଇଲେ ଏ ବାନା ବାହୁଡ଼ା କରି ଗନ୍ତାବାହୁଡ଼ା ମୁଣାରଂ ଆନ ବାନା ନେବ । ଚକରେ ବଇସମ ପଡ଼ିଲେ ଏ ବଇସମ ଏ ଦେବ । ପରବ ଯାତ୍ରାମାନରେ ରାଜପ୍ରସାଦ ରାଜକଟକ ଗଲେ ଏ ସଂଗତେ ଜଣେ ଜିବ । ଅପରାଜିତା ଦିନ ଅନକୁଳ ଉଲୁରି ନେଇଂ ଲେମ୍ୟାଇ ଦଣ୍ଡପାଟେ ପାଡି ଦେସ ବେରବୋଇ ଦେସରେ ଲଗାଇବ ॥

**[118a] ଚୁହାଣ ସେବା ୧୮**

ଏ ଧୋଲ ଦମା ଘେଡ଼ାକୁ ସେବା କରିବ । ପିଣ୍ଡିକାରେ ଘୋଡ଼ା ପଇଠ ହୋଇଲେ ସେ ଘୋଡ଼ାକୁ ଷେଇବା କରିବ । ପରିକ୍ଷା ବେହୋରଣେ ଥିବ । ପରିକ୍ଷା ଯାହାକୁ ଦଣ୍ଡମଣ୍ଡ କରିବ ତାକୁ ମାରିବ । ପରିକ୍ଷା ବୁଲି ବାହାର ହୋଇଲେ ଘୋଡ଼ା ଉପରେ ଏ ଗହଣ ପଛେ ଧୋଲ ଦମା ବାଇବ । ଗଙ୍ଗବଂସେ ପୁରୁଷୋତ୍ତମଦେବ ରଜାଙ୍କ ସରିକି ଏ ଦେଉଳ ସେବକମାନଙ୍କୁ ଘୋଡ଼ା ଚାବୁକେ ମାଡ଼ ହୋଉଂଥିଲା । ଅନଙ୍ଗଭିମଦେବ ମହାରାଜାକଂ ରାଇଜେ ପରିକ୍ଷା ପରମହଂସ ବାଜପେଇ ମାହାପାତ୍ର ଅଧିକାରେ ଏ ଘୋଡ଼ା ଚାବୁକ ନୋହି ବେତ ଭିଆଣ ହୋଇଲା । ଏ ବେତ ଘେନି ମାରିବ ।

**ଦିଉଡ଼ିଆ ସେବକ ସେବା ୧୮**

ପରିକ୍ଷାକୁ ଦିଉଡ଼ି ଚାରି ଗୋ୪ ବେହେରା ଦିଉଡ଼ି ଦୁଇ ଗୋ୨ ତଳିକ୍ଷୋ ଦିଉଡ଼ି ଗୋ୧ ଦେଉଳ ପଟନାୟକ ମାହାପସାଇତ ବେହୋରଣ ଡ଼ଗରା ମଧ କରି ଜ୩୮ ଦିଉଡ଼ି ଗୋ୩ ଗାଏ ଦିଉଡ଼ି ଗୋ୧୦ ସେବକ ଜ୧୦୮ ଏ କୋଠରୁଂ ପିତଳ ଦିଉଡ଼ି ନାଳୁଆ ନେଇଂ ଏ ମୁଳେ ଥିବ ମାଲପା କୋଠରୁ ପାଇବ । ଦିଉଡ଼ିକି ଧୋବକନା ଧୋବାମାନକଂଠାରୁ ନେବ । ଜେ ଜାହା ଦିଉଡ଼ି ତାହାଠାରେ ଧରିବ । ଦେବସ୍ନାନ ଯାତ୍ରା ଶ୍ରୀଗୁଣ୍ଡିଚା ଯାତ୍ରା ସେହ୍ନା ଲାଗିକି ଦେଇତାପତି ହକରା କରି ଆଣିମାକୁ ପରିକ୍ଷା ଦିଉଡ଼ିଆ ଜାଇ ଘେନି ଆସିବ ।

**ଦେଉଳ ଆଏତନ ଭିତର ଦଣ୍ଡୁଆସି ସେବକ ସେବା ୧୮**

ଏ ରାତ୍ର ଦିବସ ଦେଉଳ ଆଏତନ ଭିତର ଜଗିଂଥିବ । ରାତ୍ର ସବୁ ଦେଉଳ ବୁଲି ଦେଖୁଂଥିବ । ରାତ୍ର ଅଲଗା ଲୋକ ଦେଉଳ ଆଏତନ ଭିତରେ ନ ରୁହାଇବ । ପରିକ୍ଷା ଦେଉଳକୁ ଅଇଲାଗଲାବେଳକୁ ଦେଉଳ ଦୁଆର ସରିକି ଲୋକମାନକୁଂ ଉଠାଇ ଦେବ । ଜାତ୍ରୀମାନକଂର ମଧ ଚୋରି ହୋଇଲେ ଦେଉଳ ଆଏତନ ଭିତରେ ଏ ଦେଇ ବୋଧ କରିବ ।

**[118b] ଦୁଆର ଦଳଏ ସେବା ୧୮**

ଏ ସିଂହଦୁଆର ଦକ୍ଷିଣ ଦୁଆର ଉତ୍ତର ଦୁଆର ପଶ୍ଚିମ ଦୁଆର ମଧ ଚାରି ଦୁଆର ଜଗିବ । ଯବନମାନକୁଂ ଭିତରକୁ ନ ଛାଡ଼ିବ । ପରିକ୍ଷା ବୋଲ ପ୍ରମାଣେ ଦେଉଳ ବନ୍ଦିମାନ କରିବ । ପରିକ୍ଷା ଗହଣ ଖଟିବ । ସୂର୍ଯବଂସେ କପିଳେଶ୍ୱର ଦେବ ରଜାକଂ ରାଇଜଦିନରଂ ଏ ପଶ୍ଚିମ ଦ୍ୱାର ମୁଦ ହୋଇଲାକୁ ଏ ଦ୍ୱାର ଜଗିଆ ନୋହିଲା । ଦେଉଳ ସେବକମାନକଂ ଚୋରି ଧଇଲେ ପରିକ୍ଷା ଛାମୁରେ କହିବ ॥

**ଏ କ୍ଷେତ୍ର ଅଷ୍ଟଶମ୍ଭୁ ଅଷ୍ଟଚଣ୍ଡି ସେବକମାନ ସେବାକୁ ।**

ଏ ଜେ ଜାହା ଦେବତାମାନଙ୍କୁଂ ସେବା କରିବେ । ଯଥା ବିଧି ବେଳରେ ପାଣି ପତ୍ର ଲାଗିକରାଇ ପୂଜା କରିବେ । ଶୁଦ୍ର ସେବକ ପାଣି ପତ୍ରି ଲାଗି କରାଇବ । ବ୍ରାହ୍ମଣ ସେବକ ଭୋଗଲାଗି କରାଇବ । ପରିକ୍ଷାକୁ ନିତି ପ୍ରସାଦ ଦେବ । ରାଜାଏ ଶ୍ରୀପୁରୁଷୋତ୍ତମେ ବିଜେ କରିଥିଲେ ଏ ସବୁ ଦେବତାମାନକଂର ପ୍ରସାଦ ଆଣି ଦେବାର୍ଚ୍ଚନ ଘରେ ପଇଠ କରିବେ । ମାହାଦେବମାନକଂର ଶିବରାତ୍ରି ପ୍ରସାଦ ଦେବିମାନକଂର ମହାଷ୍ଟମୀ ପରବ ପ୍ରସାଦ ଏ ଦୁଇ ରାଜ ପ୍ରସାଦ ଜେ ଜାହା ସେବକମାନେ ନେଇଂ ରାଜକଟକେ ଶ୍ରୀନଅରେ ପ୍ରବେସ କରିବେ ।।

**ତୀର୍ଥ ମାଟୀଆ ସେବକ ସେବା ୧୯**

ଏ ମାରକଣ୍ଡେଶ୍ୱର ସ୍ୱେତଗଙ୍ଗା ଇନ୍ଦ୍ରଦ୍ୟୁମ୍ନ ଏ ତୀର୍ଥମାନରଂ ବରଷକୁ ବରଷ ପଙ୍କମାଟୀମାନ ବାହାର କରିଂ ପକାଇବ ।

**ଏ କ୍ଷେତ୍ର ଜଗିଆ ସାହିସେବକ ସେବା ୧୯**

ଏ କ୍ଷେତ୍ର ଜଗିଆ ଥିବ । ରାତ୍ର ସବୁ ସାହି ଜଗିଂଥିବ । ଘର ମାନକଂରେ ଚୋରି ହୋଇଲେ ଜେତେକ ଚୋରି ଜାଇଥିବ ଏ ଗିରସ୍ତକୁ ପ୍ରମାଣ କରାଇ ଏ ଚୋରି ପଦାର୍ଥ କଢ଼ଡ଼ି ଦେବ । ଚୋର ଭେଟ ପଡ଼ିଲେ ଚୋରକୁ ଦଣ୍ଡ କରିବ । ଏହାର ସବୁ ଲୋକ ଘେନି ପରିକ୍ଷାକୁ ସେବା କରିଂଥିବ ।

**[119a] ବାଦ୍ୟକାର ସେବା ୧୯**

ଏ ସେବକ ବଡ଼ ଢ଼ୋଲ ଗୋ୧୯ ଜ୨ କଢ଼ା ଗୋ୧୯ ଜ୧ ... ଗୋ୨୯ ଜ୨ ମାଦଳ ଗୋ୧୯ ଜ୧ ବିଜିଘୋଷ ଗୋ୧୯ ଜ୧ ଗିଡ଼ିଗିଡ଼ି ଗୋ୧୯ଜ୧ କଂସାଖୋରା ଘଣ୍ଟୁଆ ଜ୧ ମହୁରିଆ ଜ୧ କାହାଳିଆ ଜ୨ ଗାଏ ଜ୧୨୯ ଏ ସେବା କରିବେ । ପାହାନ୍ତି ଅବକାସେଂ ତିନି ଧୂପରେ ପୁଷ୍ପଆଞ୍ଜୁଂଳି ବିଜେବେଳେଂ ପର୍ବଯାତ୍ରାମାନରେ ମଧକରି ସିଂହଦ୍ୱାରେ ବାଦ୍ୟ ବାଇବ । ପରିକ୍ଷା ବୁଲି ବାହାର ହୋଇଲେ ଏ ଗହଣେ ବାଇବ ।

**ଏ ଭୋଗ ପରିକ୍ଷାପଣ ସେବା ୧୯**

ଏ ପରିକ୍ଷା ଶାସ୍ତ୍ର ଜାଣିଲା ହୋଇ ବ୍ରାହ୍ମଣ ହୋଇବେ । ...ଳ.. ପୂଜା ପର୍ବ ଯାତ୍ରାମାନ ଯଥାବିଧି ପ୍ରମାଣେ କରାଇବ । ପାହାନ୍ତି ଅବକାସକୁ ଆସି ମୁଦ ଦେଖି କବାଟ ଫେଡ଼ାଇବ । ତିନି ଧୂପ ଜଗନ୍ନାଥ ବଲଭ ଅବକାସ ରାତ୍ର ବଡ଼ସିଂଘାର ଅବକାସ ପୁଷ୍ପଆଞ୍ଜୁଂଳି ବିଜେ ମଧ କରିଂ ଏତେ ଅବକାସେ ଜଗମୋହନ ମଣ୍ଡପେ ଗରୁଡ଼ଖମ୍ବଠାରେ

ପଟୁଆର କରିଂ ନାଟ ଖଟଣି କରାଇବ । କଳାରାଆଟ ମଣ୍ଡପରେ ବସିଂ ବେହେରଣ କରିଥିବ । ଆଗେ ଖଡ଼ି ବିଞ୍ଚଣା ଫୁଲଗଭା ଥୁଆ ହୋଇଂଥିବ । ଭିଆଣ ନିଯୋଗ ବିଶେଇମାନଠାରୁ ଭିଆଣ ପ୍ରମାଣେ ମାପ ତୁଳ କରି ଭୋଗ ନିଜୋଗ ... ତୁଳମାନ ଆପଣା ଖଡ଼ି ଘେନି ଗାର ଦେଉଥିବ । ଏ ଭୋଗ ନିଯୋଗ ପଦାର୍ଥମାନରଂ ବିସ୍ୱାଏ ପଡ଼ିଆକରି ନ ଘେନିମ । ସରି କରି ଘେନିମ । ବିସୋଇଠାରୁଂ ମାପ ତୁଳରେ ଜେତେକ ଅଧିକକରି ଘେନିଥିବ ତହୁଂ ସରି ମାପ ତୁଳେ ରୋସୁଅକୁ ଦେଇଂ ଆଉ ଜେଉଁ ପଦାର୍ଥମାନ ଅଧିକ ହୋଇବ ତାହା ତୁଳାଇ ସଜାଡ଼ି ଥୋଇବ । ... ... ଭୋଗ ନିର୍ମାଲ୍ୟ ବେହୋରଣକୁ ନିଆଇ ଭୋଗ ଦରସୁଆ କରିବ । ଜେଉଁ ପ୍ରକାରେ ଭାତ ତିଉଣ ଖିରି ପିଠା ଜେଉଁ ପ୍ରକାରେ ତୁଳ ହୋଇଅଛି ସେହି ପ୍ରକାରେ ତୁଳ ପଳ କରି ଘେନିବ । କଂଚା ପୋଡ଼ା ଅଲଣା ପୋଡ଼ାଇ ବୁଝିବ । ଗନ୍ଧିଅଣ **[119b]** ... ଥିବା ବାସରେ ବୁଝିବ । ଏ ଖିରିପିଠାମାନ ତୁଳପଳକୁ ଊଣା ହୋଇଲେ ଗନ୍ଧିଅଣ ସରକମାନ ଊଣା ହୋଇଂଥିଲେ କଂଚା ଅଲଣ ହୋଇଂଥିଲେ ଏ ସୁଆର ମାହାସୁଆର ଛତିସା ନିଜୋଗ ଭାତ ସୁଆରକୁ ମଧ କରିଂ ଦଣ୍ଡମଣ୍ଡ କରିବ । ... ... ଘିଅ ସାରଣା କରି ଘେନିବ । ମକର ଯାତ୍ରା ଦିନେ ଥାଉଁ ରାତ୍ର ବଡ଼ସିଂଘାର ଭୋଗ ବଢ଼ିଲା ଉତାରୁଂ କଳାରାଆଟ ମଣ୍ଡପରେ ସମସ୍ତ ପରକରଣମାନେ ଥାଇଂ ପରିକ୍ଷା ବେହୋରଣରେ ଭିଆଣ ନିଯୋଗ ବିସୋଇଠାରଂ ମକର ଚଉରାସି ଭୋଗ ଅଧା ତୁଳ ପଳ କରି ଘେନିବ । ପିଠାତଡ଼ପ ମଖା କରିଂ ଖଣ୍ଡ ଘେନି ବଇଠି ଘୋଡ଼ାକୁ ମାରି ... କରି ଘେନିବ । ସବୁ ପରବ ଯାତ୍ରାମାନରେ ପଟୁଆର କରିଂ ଗିତ ନାଟ ବାଦ୍ୟ ଏମାନ କରାଇଂ ଯାତ୍ରାମାନଂ କରିବ । ପରବଯାତ୍ରାମାନର ରାଜ ପ୍ରସାଦ ଯାତ୍ରା ବଢ଼ିଲା ଉତାରେ ଶ୍ରୀଅଙ୍ଗମାନରଂ ମୁଦଲହସ୍ତ ଉଲାଗି କରି ସୁବର୍ଣ୍ଣ ପାତ୍ର ପୁରାଇଂ ଆଣି ଦେଲା ଉତାରେ ଯେ ହାଥରେ ଘେନି ଭଣ୍ଡାର ମେଇକାପ ହାଥରେ ଦେଇଂ ଭଣ୍ଡାରେ ଥୋଆଇଂ ଏ ଯାତ୍ରାମାନର ଭୋଗ ମୁଣୋହିରି ଜେ ମହାପ୍ରସାଦ ଆଉ ଆନ ଆନ ପ୍ରସାଦମାନ ଜେତେକ ଏ ସବୁଠାକୁ ତୋଳାମୁଣି ଉଲାର ବାଉଂସିଆ ଚାଂଗଡ଼ା ସବୁ ସଂଯୋଗ କରି ଫୁଲବଡୁ ପ୍ରସାଦବଡୁ ଲେକାଂ ଗୋହାରିଆ ଘଣ୍ଟ କାହାଳି ମଧ କରି ରାଜକଟକେ ରୁହାଇବ । ରଜା ଶ୍ରୀପୁରୁଷୋତ୍ତମ ବିଜେ କରି ନ ଥିଲେ ପୁଷ୍ୟାଭିଷେକ ଯାତ୍ରା ଗୁରୁବାର ଏକାଦଶି ଅଭିଷେକ ଯାତ୍ରାରେଂ ସିଂହାସନ ତଳେ ଦଣ୍ଡ ନିଉଂଛାଳି କରିବ । ଦୋଳଯାତ୍ରାରେଂ ଫଗୁଚାଚେରି ପାଞ୍ଚଦିନ ତିନିବାଡ଼େ ଶ୍ରୀଅଙ୍ଗକୁ ଫଗୁ ବିଞ୍ଚିବ । କୁମାରଉଛବ ଯାତ୍ରାରେ ସିଂହାସନ ତଳେ ଥାଇ ସୁନା କଉଡ଼ି ହିଂଗୁଳ କଉଡ଼ି ତିନି ତିନି ଆଞ୍ଜୁଂଳି ତିନି ବାଡ଼ରେ ଶ୍ରୀପୟରଠାକୁ ବିଂଚିବ । ତିନି ଧୂପ ପୂଜା ସଙ୍ଗ ନାଳେ ପାଦୁକ ପୁଷ୍ୟଆଞ୍ଜୁଂଳି ଫୁଲ ମଣ୍ଡା ରଜାଏ ପୁରୁଷୋତ୍ତମେ ନ ଥିଲେ ଏ ପାଇବ । ଏ ଦେଉଳକୁ ଜିବାଆସିବା ବେଳେ ଦେସ ବୁଲିଜିବା ବେଳେ ରାଜକଟକ ଗଲେ ଏହା ସଙ୍ଗେ **[120a]** ଧୋଲ ଦମା ବାଜିବ । ଏହା ହାଥରେ ଭଣ୍ଡାର ସୁନାମୁଦ ମୁଦି ଥିବ । ଦେଉଳ ପରିବାର

ସେବକମାନେ ସମସ୍ତେ ସେବା କରିଂଥିବେ । ପରମେଶ୍ୱର ସବୁଜାତ୍ରା ଅବକାସମାନରେ ଖୁଣ୍ଟିଆ ଆସିଂ କହି ...ମଇଲମର ଖୁଣ୍ଟିଆ ଆଣି ପ୍ରସାଦ ଦେବ । ତିନି ଧୂପ ମୁଖ୍ୟ କରିଂ ସବୁ ... ବଢ଼ିଲେ ପଣ୍ଡାମାନେ ଆଣି ପ୍ରସାଦ ଦେବେ । ଅବକାସ ମାନର ଉଲାଗିବେଳେ ଚାଙ୍ଗଡ଼ା ମେଇକାପ ଆଣି ମଇଲମର ଉଲାଗି ମଢ଼ିଆଳ ଆଣି ମଥାରେ ଲଗାଇଂ ନେମ । ଭଣ୍ଡାର ମେଇକାପ ଆଣି ପୁଷ୍ୟ ଆଙ୍ଗୁଂଳି ମଣ୍ଡାଚୁଳ ଏ ଦରସନ ବେଳେ ଦେବ । ପରିକ୍ଷା ଦେଉଳେ ନ ଥିଲେଂ ଉଆସେ ନେଇଂ ଏ ଚୁଳ ପାତିଆ ପଡିଆରି ଦେବ । ଧୂପପାଦୁକ ସଙ୍ଖନାଳରେ ପତ୍ରିବତୁ ଦେବ । ପରିକ୍ଷା ସାଢ଼ି ପାଇଲେ ସାଢ଼ି ଦହି ପଟୋଇ ସାକର ଆୟା ମାହାଜନ ଦେବ । ପରିକ୍ଷା ରାଜକଟକକୁ ହୋଉ କି ନିଜୋଗ ଦେସମାନ ଦେଖିଗଲେ ପରମେଶ୍ୱରକଂ ଲାଗିରି ମହାପ୍ରସାଦ ଫୁଲ ପାନ ତାଟ ଦିନକୁ ଦିନ ନେଇଂ ପ୍ରସାଦବତୁ ଦେବ । ନିତି ଆନି ଧୂପ ମୁଖ୍ୟ କରିଂ ନାନା ପରବ ଯାତ୍ରା ଉପାଧି ଭୋଗମାନର ଜେତେ ପରିକ୍ଷା ବସାଣ ମାହାପ୍ରସାଦ ସବୁ ଆଣି ଭିତର ବଢ଼ା ସେବକ ବହି ଉଆସଂରେ ଦେବ । ରାଜକଟକର ନୋହିଲେ ଦେସ ବୁଲି ଜାଇଂ ଥାଇଂ ଆସିଂ ହୋଇଲେ ଦେଉଳେ ସାଢ଼ି ପାଇବ । ପରମେଶ୍ୱରକଂ ଛାମୁକୁ ଜିବା ବେଳକୁ ମୋଣୋହି କୋଠାରଂ ଅଖଣ୍ଡ ମେଇକାପ ବଇଠା ଆସିବା ଜିବା ବେଳେଂ ଦେଖାଇବ । ଅବକାସମାନ ମଇଲମ କଲେଂ ପରିକ୍ଷା ପ୍ରସାଦ ପାଇଲା ଉତାରେଂ ଏ ପ୍ରସାଦ ଫୁଲ ପରିକ୍ଷା ହାଥରୁ ବେହୋରଣ ପାଳିଆ ପଢ଼ିଆରୀ ଏ ଫୁଲ ପ୍ରସାଦ ପରିକ୍ଷା ହାଥରୁ ଘେନି ଏ ଉଆସେ ଦେବ । ଶ୍ରୀପୁରୁଷୋତ୍ତମକ୍ଷେତ୍ର ସମସ୍ତ ଲୋକମାନର ହାରିଗୁହାରି ଦୋସି... ... ଶ୍ରୀପୁରୁଷୋତ୍ତମ ଲୋକ ବୁଝିଂ ଜେମନ୍ତ ଦଣ୍ଡମଣ୍ଡ କହିବ ସେ ପ୍ରକାରେ ପରିକ୍ଷା ଦଣ୍ଡମଣ୍ଡ କରିବ । ପରବଯାତ୍ରାମାନରେ ପ୍ରତି ଅରଚା ଦେବତା ବେଢ଼ା ପଟୋଆରଠାରେ ଆୟାମାହାଜନକୁ ଅନନ୍ତ ପଢ଼ିଆରି ହକରା କରିବ । ଏ ବାହାରେ **[120b]** ଚରିଚିବାକୁ ବେହୋରା ଜ୧ ତଳିକ୍ଷୋ ଜ୧ ଭିତରଚରଚାକୁ ଭିତରକ୍ଷୋ ଜ୧ ଧାନଘର ସିଠ ଜ୧ ଦୁଧଘର ସିଠ ଜ୧ ସୁଆସେଂସିଠ ଜ୧ ଏତେଠାରେ ଚରଚିବାକୁ ଲୋକ ଥିବ । ଏ ବାହାରେ ଶ୍ରୀପୁରୁଷୋତ୍ତମ ସହର ଚରଚାକୁ ଭିନ୍ନେ ଲୋକ ଥିବ ।

## ପଟନାଏକ ମାହାପସାଇତ ବେହରଣ ଡ଼ଗରା ତିନିଜଣ ସେବା ୧୯

ଏ ପରିକ୍ଷା ସଗଂତେ ଥାଇ ଆୟବୟ ଲେଖାପଢ଼ା କରିବେ, ଏ ନିମନ୍ତେ ଏ ଲେଖାପଢ଼ାକୁ ଜଣକେଂ ପଡିହତ ଚାରିଜଣର ମଧେ ଚିଟାଉ ଜ୧ଣେ ପଇଠ ଭୋଗ ବଏ ଭାଗମେଣ୍ଟା ପଡିହତ ଜ୨ଣ ନିଜୋଗ ଲେଖାମାନ ଲେଖିବାକୁ ମଧକରି ଲେଖା ଲିହା ପଡ଼ିହତ ଜ୧ଣେ ଗାଏ ଜ୪ ଲେଖାଏ ପଡ଼ିହତ ଜ୧୨ଣ । ଏ ବାହାରେ ଯେମାନଙ୍କର ରୋସ ଆଡ଼ତିରେ ଧାନ ଘରେ ଦୁଧ ଘରେ ସୁଆଁସେ ସହର ଆଡ଼ତିରେ କରଣ ଜ୫ଣ ଲେଖାଏ ହୋଇବ । ଯେ ପ୍ରମାଣେ ଜ୧ଣକେ କରଣ ଜ୧ ଲେଖାଏଁ ସତାଇସି ଜ୨୭ଣ କରଣ ହୋଇବ । ବେହୋରଣେ ଭୁଇଂଖଢ଼ି ମାହାପସାଇତ କରିବ । ଦେଉଳର ଭୋଗ

ନିଯୋଗର ସେବ ସେବକମାନର ଭଲମନ୍ଦ ଆଡ଼ତି ବେହୋରଣେ ପଡ଼ିଲେଂ ବେହୋରଣ ଡ଼ଗରା ରାଜକଟକକୁ ଚିଟାଉ ଦେବ । ବରଷକୁ ବରଷ ଏମାନେ ଛାଇଂ ଶ୍ରୀନଅର ବେହୋରଣେ ଲେଖା ଦେବେ । ସେବକ ନିଜୋଗର ଗତ ଆଗତ ସୁଝାଉଣି ଲେଖାଜୋଖା କରିବ । ହରିତାଳିକା ଚଉଠି ଦିନ ପାଜିଂ ପୂଜା ସିତଳ ଯେ ପଡ଼ିହଥମାନେ ବିଲୋହିବେ । ବରଗଣ କରଣମାନେ ଜେ ଜାହା ଆଡ଼ତି ଲିହାପଢ଼ା କରିବେ ॥୦॥

**[121a] ପାଜିଂଘର ମେଇକାପ ସେବକ ସେବା ୧୯**

ଏହାର ସେବା ଏ ପାଜିଂ ପଡ଼ୀହସ୍ତମାନେ ପାଂଛି ଲିହିଲା ବେଳକୁ ପାଜିଂ ଘରଂ ପାଜିଂମାନ ଆଣିଦେବ । ଜେତେବେଳେ ଜେଉଁ ପାଜିଂ ଲୋଡ଼ା ପଡ଼ିବ ସେ ପାଜିଂ ଆଣି ଦେବ । ପଢ଼ି ଲିହିଂ ସାରି ପଡ଼ିହସ୍ତମାନେ ଜେ ଜାହା ଘରକୁ ଗଲେ ସବୁ ପାଂଛି ବାନ୍ଧି ଥୋଇବ । ପାଜିଂ ଘରୁ ପଡ଼ିହସ୍ତମାନଙ୍କୁଂ ଲିହିଲାପତ୍ର ଗୋଟୀ ହେ ନେଇ ନ ଦେବ ॥୦॥

**ଏ ପାଜିଂଘର ପାଇକ ସେବାକୁ ୧୯**

ପାଜିଂ ରାତ୍ର ଦିବସ ଜଗିଥିବ । ପାଜିଂ ଘରୁ ପତ୍ର ଗୋଟି ହେ କାହାକୁ ନେଇ ନ ଦେବ ॥

**ଏ ପାଜିଂଘର ତଣ୍ଡକାର ସେବକ ସେବାକୁ ୧୯**

ଏ ଖ... ମାନକୁ ଆଣି ପାଜିଂଘରେ ପଇଠ କରି ଲେଖା କରାଇବ । ଲେଖାସରି ଖାତକର ବେହୋରଣ ଖାତକର ଅଧିକ ପ୍ରକ୍ଷିନପାଇ ସାଧ ଲଗତି ଜେତେକ ରହିବ ସବୁ ଲଗତି ଯେ ସାଧି କୋଠେ ପଇଠ କରିବ ॥

**ଏ ପୁରୁସୋତ୍ତମ କ୍ଷେତ୍ର ଦାଣ୍ଡୁଆ ଡଗରା ସେବାକୁ ୧୯**

ଏ ସହର ଦାଣ୍ଡ ବୁଲି ସବୁ ସୁଣୁଥିବ । ଯାହା ଦେଖୁଥିବ ସୁଣୁଥିବ । ଯେ ଭଲ କରି ବୁଝି ନିତିକି ନିତି ଠାକୁରଙ୍କ ଛାମୁକୁ ବେନୋତର ଦେଉଂଥିବ । ଏ ବେନୋତ୍ତର ହରିବଲଭ ଚାଟ ସଗଂତେ ରାଜକଟକକୁ ଯାଉଥିବ । ଦାଣ୍ଡମାନ ଅସଂସ୍କାର କରାଇ ନ ଦେବ । ଆକଟ କରିଥିବ । ରାଜ ବିଯେ ହୋଇଲେ ଦାଣ୍ଡରେ ଆମ୍ବପତ୍ର ନରକୋଳିପତ୍ର ଲୁଗା, ଯେମାନ ତେରଣା ବଧାଇବ । ଘରମାନଙ୍କଂ ଦୁଆରେ ପୁର୍ଣ୍ଣକୁମ୍ଭମାନ ବସାଇଥିବ । ରଜାଏ ଶ୍ରୀପୁରୁଷୋତ୍ତମେ ବିଯେ କରିଥିଲେ ଯେତେବେଳେ ଯେଉଁ ବାରତା ତାହା ଶ୍ରୀଚରଣେ ଗ୍ୟାତା କରୁଥିବ । ଜେତେବେଳେ ଯେଉଁ ବାରତା ତାହା ପରିଛାକୁ କହି ରାଜକଟକକୁ ଚିଟାଉଦେବ ।

**[121b] ଏ ଶ୍ରୀପୁରୁଷୋତ୍ତମ ଜଗନ୍ନାଥଦେବଙ୍କ ଦେଳ ୧୯**

ଶ୍ରୀଗଗଂବଷେ ଶ୍ରୀ ଅନଗଂଭିମଦେବ ମାହାରାଯା ଏ ଜଯାତିରଯା ତୋଳାଇଥିଲାର ପାଟଳ ଏ ପୁରୁଣା ହୋଇ ଅତୀ ବଇସମ ହୋଇଥିଲାକୁ ଏ ପାଟଳ ଭାଙ୍ଗି ଶ୍ରୀବକ୍ଷ ଖଣ୍ଡସାଳ ଘଟଣାରେ ଯେ ଦେଉଳ ତୋଳାଇଂ ଭୋଗ ମଡ଼ପୁଲି ଭିଆଇ ପ୍ରକରଣ ମୁଳ କରି ସେବକ ଚଉଦ ସତ ପ୍ରକରଣ କରି ଭିଆଣ ହୋଇଲାକୁ ବ୍ରାହ୍ମଣ ସେବକ ଚଉଦ ପ୍ରକରଣର ୧୪ଝ ବ୍ରହ୍ମଘଟଣା ନିମିତେ ପୁବ ସେବକ ଦେଇତାପତି ସୁଦୁସୁଆର ଶ୍ରୀମୁଖ ସିଂଗାରି ମଧ କରି ପ୍ରକରଣେ ୧୯ ନିତ୍ୟକୃ ପରିକ୍ଷେଦାର୍ଥ ସେବକ ଭୋଗ ମୁଣୋହି ପୁଜା ପାଣିଛଡ଼ା ପଣ୍ଡା ପ୍ରକାର୧ଣେ ନାନା ବେସମାନ କରିବାକୁ ସିଂଘାରି ପଶୁପାଳକ ସେବା ୧ ପ୍ରକର୧ଣେ ଛାମୁଖୁଣ୍ଟିଆ ପ୍ରକରଣ ୧ ଅୟାମାହାଜନ ପ୍ରକରଣ ୧ ଭୀତର ଭଣ୍ଡାର ମେଇକାପ ଚାଗଂଡ଼ା ମେଇକାପ ବାହାର ଭଣ୍ଡାର ମେଇକାପ ସେଜଘର ମେଇକାପ ପାଆଡ଼ାଘର ମେଇକାପ ଦକ୍ଷିଣ ଘର ମେଇକାପ ଅଖଣ୍ଡ ମେଇକାପ ସରଘର ମେଇକାପ ମଧ କରି ପ୍ରକରଣ ୧ ବାହାର ଗରେଆବଡୁ ଭୀତର ଗରେଆବଡୁ ସୁଆରବଡୁ ...ବଡୁ ପନ୍ତିବଡୁ ପରିଗବଡୁ ଭିତରବଢ଼ା ସୁନା ଦିଉଡ଼ି ସେବକ ପ୍ରସାଦବଡୁ ଫୁଲବଡୁ ବିମାନ ବଡୁ, ହାନ୍ଦୋଳା ବଡୁ ମଧ କରି ପ୍ରକର କରି ପ୍ରକରଣେ ୧ ।

- ରୋସ ସେବକ ଏ ଭାତରଧା ପାଣିବୁହାକୁ ବଇଠୀ ପାଳିଆସେବା ୧୨ ଚାଳଧୁଆ ସେବା ୪ ଝୋଲାରେ ହାଣ୍ଡି ବସାଇ ଚାଉଳଭରା ସେବା ୪ ଝୋଲା ଲଗାଇ ...ବାକୁ ...ଲା ସେବା ୪ କାଠଚଟୁ ଘେନି ଭାତ ଚଳାଇବାକୁ ଚଲାଣିଆ ସେବା ୪ ଭାତ ଓଲାଇବାକୁ ଓଲାଣିଆ ସେବା ୪ ଭାତ ଗାଳିବାକୁ ଗାଳଣିଆ ସେବା ୪ ଗାଏ ସେବା ୩୬ ଏ ଭାତ ବହିବାକୁ ତୋଳାବଡୁ ଗୋଟୀଭାତ ବାଧିବାକୁ ତଳିବଡୁ ଘିଅପରସା ସେବକ ଭାତ ପନ୍ତିରେ ବସାଇ ଗଣମଣ କରିବ ଯେ ଦେବାକୁ ପନ୍ତିବଡୁ ମଧକରି ... **[122a]** ଗତ ୧୯ ପ୍ରକରଣେ ୧ ।
- ଏ ସୁଆର ମାହାଶୁଆର ନିଯୋଗକୁ ୧୯ ମାହାସୁଆର ଏ ସାରେଆପିଠା ସୁଆର ବଗଡ଼ାପିଠା ସୁଆର ଖିରି ସେବକ ସୁଆର ତୀଉଣସୁଆର ପଣାସୁଆର ପାଚେଲୀ ସୁଆର ତୋଳାବତୀ ସେବକ ରୋସ ଧୋପଖାଳିଆ ସମରଥା ରୋସ ଦୁଆର ଜଗିଆ ପାଇକ ମଧକରି ପ୍ରକରଣେ ୧ ।
- ଏ ବିରଛତୀ ନେଇ କଳାପାଆଛଠାରେ ... ତରାସ ମଧକରି ଛତିସ ସେବକ ପ୍ରକରଣେ ୧ ଏ ସିଙ୍ଗଦୁଆର ପଢ଼ିଆରି ପରବଜାତ୍ରା ପଢ଼ିଆରି ଆସ୍ତାନ ପଢ଼ିହାରି ଭୋଗ ଡାକିବା ପଢ଼ିଆରି ମଧକରି ପ୍ରକରଣେ ୧ ।
- ଏ ଚନ୍ଦନ ଘସା କରଟୀଆ ମୁଦୁଲୀ ହଡ଼ପ ନାଏକ, ବିଡ଼ିଆ ଜୋଗଣିଆ ଦୁଆର ନାଏକ ମଧ କରି ପ୍ରକରଣେ ୧ ।

- ଏ ଭୀଆଣ ନିଜୋଗ ହାଣ୍ଡି ନିଜୋଗ ଅଖଣ୍ଡ ନିଜୋଗ ପରବାଜାତ୍ରା ମଧ କରି ପ୍ରକରଣେ ୧ । ଏ ବାହାର ଦେଉଳିମାନର ସେବକ ପ୍ରକରଣେ ୧ ଗାଏ ଚଉଦ ପ୍ରକରଣ ୧୪ ।
- ଏ ସୁଦ୍ର ପ୍ରକରଣ ୭ଝ । ଭଣ୍ଡାର ଜଗିଆ ଫାରକ ଦଳ ପ୍ରକରଣ ୧
- ସୁଗଧଂ ଘଟୁଆରି ତିଳଅର୍ଏଁଳା ଘଟୁଆରି ପାନମଡ଼ି ସେବକ ସୁନା ରୁପା ତମ୍ୱା କଂସା ମଜା ସେବକ ଚିନରା ରନ୍ ବନ୍ଧାଣି ସୁନା ରୁପା ଗଡ଼ିବା ମାଠ ବିନ୍ଧାଣି ସୋହ୍ଲ ଚିତା ବିନ୍ଧାଣି ଅଷ୍ଟଲୋଇ ମାହାରଣା କଂସାରି ମାହାରଣା ପଥୁରିଆ ମାହାରଣା କମାର ମାହାରଣା ବଢ଼ଇ ମାହାରଣା କରତୀ ମାହାରଣା ରୀପୁକାର ମାହାରଣା ସଖାଂରି ଚିତ୍ରକାର ଚୁନରା ମୁଦୁଲି ସୁଆଁସିଆ ପାଟରା ବିନ୍ଧାଣି ସୁପୁଟୀ ମାହାରଣା ଦଣ୍ଡଛତ ବୀରଛତୀ ମେଘଡ଼ାମ୍ୱର ଉଳୁକରିବା ସେବକ କୁମ୍ଭାର ନିଜୋଗ ଦଏଣା ତୋଟା କୋଠ ତୋଟା ମଧ କରି ମାଳି ଗୋଛାଇତ ମଧ କରି ନାନା ସେବକ, ରଥକୁ ରଙ୍ଗଣିମାନ ଖଟୀବା ସେବକ ଚନ୍ଦ୍ରଉଦିଆ ଖଟୀବା ସେବକ ଜଉତୀସ ପାନମଡ଼ିଆଳ ମାହାସେଠୀ ରଥଦଉଡ଼ି କତାବଳା ସେବକ ରୋସ ପାଣିକୁ ଦଉଡ଼ି ଭାତତିଉଣ ଖିରିପଣା ବୁହାକୁ ସିକା ଭାର ଡ଼ାଗିଂ ମଧ ସେବା ସେବକ ରଥକୁ ... **[122b]** ଖଟିବା ସେବକ ମଧ କରି ପ୍ରକରଣେ ୧
- ଏ ଭିତର ଗାଏଣି ବାହାର ଗାଏଣି ଜନ୍ତଧାରି ତାଳଧାରି ଚଅଁରଧାରି ବେତଧାରି ପଖାଧାରି ନାଚୁଣି ସିଘାଂରି ମଧକରି ଚଉସଠୀ ସଂପ୍ରଧା ଘଣ୍ଟୁଆ କାହାଳିଆ ସଖୁଂଆ ମହୁରିଆ ଉପାଗିଂଆ ରବାବି... ବାଇଁସୀକାର ମାଦେଳି... ... ପ୍ରକରଣ ୧ ।
- ପରିବାର ନିଜୋଗ ଗୁହାରିଆ ଚକରିଆ ଲେକାଂ ତୁଆଣ ଦୁଉଡ଼ିଆ ଭାଟ ଦଣ୍ଡୁଆସି ଦୁଆର ଦଳଇ ଦେଉଳ ଯଗିଆ(ରୋଷ) ଡ଼ଗରା ମାଝି ମଧ କରି ପ୍ରକରଣେ ୧ । ଗାଏ ସାତ ପ୍ରକରଣ ୭ ଗାଏ ପଦ ୨ ବ୍ରାହ୍ମଣ ସୁଦ୍ର ମଧ କରି ଚଉଦ ସତ ପ୍ରକରଣ ।
- ପରମେସ୍ୱରକଂ ସେବମାନ ସେବା ଭିଆଣକୁ ଏ ଭଣ୍ଡାର ଜଗିଆ ଫାରେକ ଦଳ ୧୮ ଏ ସୁଦ୍ର ସେବକ ଏ ଭଣ୍ଡାର ଦୁଆର ଜଗିବ ପିଣ୍ଡିକାଠାରେ ଜଗିବ । ବେହୋରଣେ ଭଣ୍ଡାର ଆଏ ବଏରେ ଜଗିବ । ଭଣ୍ଡାର ପଦାର୍ଥମାନ ନେଇ କାମ ବେହୋରଣକୁ ଆଣନେଅ କଲେ ଏ ସଗଂତେ ଜଗିଥିବ । ମେଇକାପ ...ରୁ ବାହାର ହୋଇଲେ ଝାଡ଼ାସୋଧା ଘେନି ଛାଡ଼ୀବ । ରାତେ ମୁଦ ପଡ଼ିଲା ଉତାରେ ଭଣ୍ଡାର ଜଗି ସୋଇବ । ଅଣସର ଜାତ୍ରାରେ ତାଟୀ ଭିତରୁ ଦେଇତା ପସୁପାଳକ ବାହାର ହୋଇଲେ ଝଡ଼ାସୋଧା ଘେନି ଛାଡ଼ୀବ । ଅଣସର ପଟୀରେ ଏ ବାହାରେ ଶ୍ରୀଅଗଂର ପଇତା ଲାଗି ମଇମଧ କରି ଜେତେ ଆଡ଼ତି ପଡ଼ିବ,ବଳଭଦ୍ର ଜନ୍ନଜାତ୍ରା

ଗମ୍ଭା ଜାତ୍ରାରେ ସୁଦରସନଦେବକଂ ବିଜେ କୁମାର ଜାତ୍ରାରେ ସୁଦରସନଦେବକଂ ବିଜେ ଦେବସ୍ନାନ ଶ୍ରୀଗୁଣ୍ଡିଚା ଜାତ୍ରା ସେହ୍ନାଲାଗି ମଧ କରି ଶ୍ରୀଅଙ୍ଗ ଆଡ଼ତୀକି ଢେଢେଠାକୁ ଦେଇତା ପସୁପାଳେକକୁ ହକରା ପଡ଼ୀବ, ଏ ଜାଇ ସେମାନଙ୍କଂ ଘରୁ ହକରାକରି ଆଣିମ । ପୁଷ୍ୟାଅଭୀସେକ ଜାତ୍ରାରେ ... ... ଭ[124a]ଣ୍ଡାରୁ ସିଘାଂସନଠାକୁ ନେମାବେଳକୁ ପହଣ୍ଡ ମଣାଇ ନେମ । ଏ ଦଣ୍ଡଛତ୍ର ସିଘାଂସନ ଉପରେ ପରମେସ୍ୱରକଂ... ... ଭଣ୍ଡାର ମେଇକାପ ଧରିବାବେଳକୁ ମଣାଣ ଡ଼ାକ ପାଡ଼ିବ । ଗୁରୁବାର ଏକାଦୁସି ଅବିସେକ ଜାତ୍ରାରେ ଏ ପ୍ରକାର ଏହା ସେବା କରିବ । ପିଣ୍ଡିକାରେ ଗନ୍ଧିଅଣ ସରକମାନ ପଡ଼ିଥିଲେ ସବୁ ହାଥ ପୁରାଇ ସୋଧିଦେଖିବ । ଜଜମାନ ପିଣ୍ଡିକା ... ଦେବା ପରିଜନ୍ତେ ପଢ଼ିହାରିକି ଜଗିଥିବ । ଶ୍ରୀଅଗଂକୁ ପଇତା ଲାଗି ନିମନ୍ତେ ପବିତ୍ରା ଯାତ୍ରା ପାଟ ପବିତ୍ରା ସୁତା ପବିତ୍ରା ଉଜହୋଇବାକୁ ମଧକରି ପାଟରାମାନକୁ ଜଗିଥିବ । ସବୁ ଅବକାସ ବଢ଼ି ସିଂଘାରି ପଶୁପାଳକମାନେ ଭୀତରୁ ବାହାରିବାବେଳ ସରିକି ଝଡ଼ା ସୋଧା ଘେନି ଛାଡ଼ିବ । ଅଣସର ଜାତ୍ରାରେ ଶ୍ରୀଅଗଂ ଓଷଧ ଲାଗିକି ଔଷଧକୁ ... ସୁଦୁ ସୁଆରକୁ ଜଗିଥିବ । କରତିଆ ମୁଦୁଲି ନିତି ଚନ୍ଦନ ବାହାରେ ପରବଜାତ୍ରାମାନ ଚନ୍ଦନ ଏ ଚନ୍ଦନଘସାଠାରେ ଜଗିଥିବ । କପୁର ଚନ୍ଦନ ଘଟୁଆରି ଆଭିଚନ୍ଦନ ବଟାଠାରେ ଜଗିଥିବ । ଶ୍ରୀଅଗଂରେ ଅଗାଂଭରଣ ତଢ଼ାଉ ପଇତାଲାଗିଠାରେ ମଧ ଜଗିଥିବ । ପରବଜାତ୍ରାକୁ ପରମେସ୍ୱର ବିଜେକଲେ ଏ ସଗଂତେ ଜଗିଥିବ । ... ନିତିଆନି ଧୁପ ମଧକରି ପୁଜାର ସୁନାରୁପା ଉପୁଚାର ସଜ ଏ ଗଣମଣ କରାଇ ମେଇକାପ ଗୋଚରେ ଦେବ । ରତ୍ନକମ ସୁନାରୁପାକମ ଗଢ଼ଣ ହୋଇଲେ ସୁନାରୁପାକମ ବଇସମ ହୋଇଲେ ...ହୋଇଲେ ଏ କମ ଘଟଣାଠାରେ ବିନ୍ଧାଣି ଜଗିଥିବ । ଭଣ୍ଡାରେ ଚୋରି ବଇସମ ପଡ଼ିଲେ ଚୋରିକଲା ଖାତେକ ... ତିନିଭାଗ ଚୋରି ବଇସମ ...ଏ ଭାଗେ ଦେବ ।

## ଏ ସିଙ୍ଘଦ୍ୱାର ପଢ଼ିଆରି ସେବକ ନିଜୋଗ ସେବାକୁ ୧୯

ଏ ଜଗମୋହନ ଦୁଆର ଦଖିଣ ଦୁଆର ମୋଣୋହି କୋଠା ... ଦୁଆର ଥାଳିଘର ପାଖ ଦୁଆର ଜଗିବ ... [124b] ଦଖିଣ ଦୁଆର ରାତ୍ର ଦିବସ ଜଗିବ । ହୋକୋତି ଦୁଆର ଥାଳିଘର ଦୁଆର ଭୋଗମୁଣୋହି ବେଳେ ଜଗିବ । ପରମେସ୍ୱର ନିତିଆନି ଅବକାସ ମାନରେ ପରବ ଜାତ୍ରାମାନରେ ମଇଧକରି ମଇଲମ ହୋଇ ବସ୍ତ୍ର ଲାଗି ହୋଇ ଚତୃସମ ଲାଗିହୋଇ ତଢ଼ାଉ ଲାଗିହୋଇ ମାଳଚୁଳ ଲାଗି କରାଇ ସିଘାଂରି ପସୁପାଳେକ ...ରେ ଗମ୍ଭରା ଧୋଅପଖାଳ ହୋଇ ଲୁଗା ଭୋଗ ମୋଣୋହି ନିମନ୍ତେ ପଡ଼ିଲେ ଏ ଭଣ୍ଡାର ଘର ଦୁଆରେ ଅରଗଳିଠାରେ ଟେରା ବାନ୍ଧିବ । ଭୀତର

କଳାପାଆଛଠାରେ ଟେରା ବାଧି ଜଗି ରହିବ । ପୂଜା ଧୂପ ଦିପ ଆଳତି ଉତାରେ ଭିତର କଳା ପାବଛଠାରେ ଟେରା ପାଡ଼ିବ, ବଲଭ ଭୋଗ ଅଧିକ ଉପାଧି ଭୋଗ ମୋଣୋହି କୋଠାରେ ମୋଣୋହିବେଳେ ଧୂପଦିପ ଉତାରେ ଜଗମୋହନ ଦୁଆର ଟେରା ପାଡ଼ିବ । ପୂଜା ବଢ଼ିଲା ଉାତାରେ ଟେରା ତୋଳିବ । ପୁଷ୍ପାଞ୍ଜଳି ବଢ଼ିଲା ଉତାରେ ଭୀତର ଗମ୍ଭରା ଦୁଆର ଜଗମୋହନ ଦୁଆର ଦଖିଣ ଦୁଆର ତିନି ଦୁଆର କପାଟ ପାତି ମୁଦ ଦେଇ ଜଗମୋହନ ଦୁଆର ଦଖିଣ ଦୁଆର ଜଗି ସୋଇବ ... ବଶ୍ରାନ ଜାତ୍ରା ଗୁଣ୍ଡିଚା ଜାତ୍ରା ପରବ ଜାତ୍ରାମାନରେ ମଇଧହୋଇ ଭୋଗମୁଣୋହିବେଳକୁ ଟେରା ଧରିବ । ଜାତ୍ରିମାନେ ପରମେସ୍ୱରକୁଂ ଦରସନ କରି ଅଇଲେ ଜାତ୍ରିମାନଙ୍କଠାରୁ ପିଣ୍ଡିକା ଦେଆଇ ଜାତ୍ରୀକି ମାରଧର ନ କରିବ । ଯାତ୍ରିକି ମାଇଲେ ରାଜାର ଅଧର୍ମ ହୋଇ ଏ ନିମନ୍ତେ ମାର ଧର କିଛି ନ କରିବ । ପରମେସ୍ୱରକୁ ଦରସନ କରାଇଲା ଉତାରେ ଜାତିକି ମାଗିବ । ସେ ଜାହା ଦେବ ତାହା ନେମ । ଭୀତର ଗମ୍ଭରାଠାରୁ ଜଗମୋହନ ଦୁଆର ସରିକି ଜାତ୍ରି ଅସଂସ୍କାର କଲେ ଏ ବାହାର କରିବ । ପୁଷ୍ପାଭିଷେକ ବନ୍ଦାପନା ବେଳକୁ ସଖଂ ବାଇବ । ଭୋଗ ମୋଣୋହି ବେଳକୁ ଦକ୍ଷିଣ ଦୁଆର ପଢ଼ିଆରି ରୋସୋଅରୁ ଭୋଗ ଡ଼ାକି ଆଣିମ ॥

**'ଦ୍ୱାର ଜଗିଆ ପଢ଼ିଆରି' ...**

**[125a]** ବେହୋରା ତଳିକ୍ଷୋଅ ବେହୋରଣ ଜଗିବ । ରାଆସ ପାଇଲା ପ୍ରସାଦ ଫୁଲ ସାଇତି ପରିକ୍ଷା ଉଆସେ ଦେବ । ପରିକ୍ଷା ଦେଉଳ ନଇଲେ ପୁଷ୍ପଆଂଜଳି ମଣ୍ଡାଚୁଳ ନେଇ ପରିକ୍ଷାକୁ ଦେବ । ଜୋଗିମାନକୁଂ ଭିତର ଗମ୍ଭରା ଆଡ଼କୁ ନ ପୁରାଇବ । ତିନି ଧୂପ ବଲଭ ବଡ଼ସିଘାଂର ନାନା ପରବଜାତ୍ରାମାନରେ ମଧ କରି ପରିକ୍ଷା ପରମେସ୍ୱରକଂ ଛାମୁରେ ଉଭା ହୋଇଲେ ପଡ଼ିଆରି ପୋଟୋଆର କରିବ ॥

**ପରବଜାତ୍ରା ପଢ଼ିଆରି ସେବାକୁ ୧୮**

ପରବଜାତ୍ରା ଦିନେ ଥାଉଁ ପରିକ୍ଷାକୁ ଗିଆତା କରିବ ପରବଜାତ୍ରା ବିସୋଇଠାରୁ ଜାତ୍ରୀ ଭୋଗ ଘେନି ରୋସଅରେ ପଇଠ କରିବ । ଜାତ୍ରା ପୂର୍ଣ୍ଣେ ଭୋଗ ସାଇତିବ । ପରିକ୍ଷା ଜହିଁକି ବୋଲିବ ତାହିକିଂ ବଏ ଦେବ ॥

**ଆସ୍ଥାନ ପଢ଼ିଆରି ସେବକ ସେବା ୧୮**

ଏ ପରିଛା ବେହୋରା ତଳିକ୍ଷୋ ଏ ବେହୋରଣ କଲେ ଏ ବେହରଣ ଜଗିବ । ଧୂପ ପୋଟୋଆର ବଡ଼ସିଘାଂର ଅବକାସ ପୋଟୋଆରଟାଏ କରିବ । ପରିଛା ବେହରଣ ଭାଙ୍ଗି ଓଆସକୁ ଗଲେ ପରିଛା ଗହଣେ ଜାଇ ଓଆସେ ଛାଡ଼ିବ । ବେହରଣ ଭାଙ୍ଗିଲା ଉତାରେ ପାରକଟା ଖଡ଼ି... ବଳି ... ।

**ବୃନ୍ଦାବନ ନାଏକ ସେବକ ସେବାକୁ ୧୯**

ଏ ମୁଳେ ଦୋଳଜାତ୍ରା ଦେବସ୍ନାନଯାତ୍ରା ଶ୍ରୀଗୁଣ୍ଡିଚା ଜାତ୍ରାମାନର ମଧ କରି ମଣ୍ଡଣିରୁ ପାଟ ସିଧୁଂଆ ନେତ ପଟୁନି କୁସୁମି ଚାନ୍ଦୋଆ ଚଂଅର ... ତଳବଳ ସଚକ୍ର ମଗରମୁଁହା କଂସା ଚାନ୍ଦି ଦରପଣ ଘଣ୍ଟିଘାଖୁଡ଼ି ଫିରିଫିରା ପିତଳ କଳସ ପାନ ପତ୍ରି ମଧକରି ନାନା ମଣ୍ଡଣି ସଜ ବେହରଣୁ ଗଣମଣ କରି ଘେନିଂ ମୁଦଦେଇ ବାହାର ଭଣ୍ଡାରେ ଥୋଇଥିବ । ମଣ୍ଡଣି ବେଳକୁ ବାହାର କରାଦେବ । ଜାତ୍ରା ବଢ଼ିଲେ ଗଣ ମଣ କରି ନେବ । ଅକଂନାଟ ବହୁରୁପ ସାହିମାନରେ ହୋଇଲେ ସାହିମାନକୁଂ ଭିମିକାମାନକୁ କାଛେଣିକି ନେତ ପାଟ ଚଅର ଚାନ୍ଦୋଆ ଦେଆ ହୋଇଥିଲେ ଏ ଅକଂନାଟ ବଢ଼ିଲା ଉତାରେ ତଲପ ପ୍ରମାଣେ ସାହି ମାନରୁ **[125b]** ଗଣମଣ କରି ଘେନି ମୁଦଦେଇ ସାଇତିବ ।।

**ଏ ମଣ୍ଡଣି ଖୁଣ୍ଟିଆ ସେବକ ସେବାକୁ ୧୯**

ଏ ଦୋଳଜାତ୍ରା ଦେବଶ୍ରାନ ଜାତ୍ରା ଶ୍ରୀଗୁଣ୍ଡିଚାଜାତ୍ରା ରଥ ମଣ୍ଡଣି ମଣ୍ଡିବ । ପରମେସ୍ୱରକଂ ସେବକ ସେବା ଭୀଆଣକୁ ୧ ପାଟରା ବିନ୍ଧାଣି ସେବକ ସେବାକୁ ୨... ... ଶ୍ରୀଅଙ୍ଗରେ ଚନ୍ଦନ ରହିବାକୁ ବରସକେ ଯେତେବେଳେ ପଇତା ଲାଗି ହୋଇବାକୁ ମଧକରି ଜେତେ ପାଟଡ଼ୋରୀଅ ଲାଗିବ ଘଣାଡ଼ୋର ସରୁଡ଼ୋର ମଧ କରି ସବୁ ବଳିଦେବ । ପବିତ୍ରା ଜାତ୍ରାରେ ଜେତେ ପାଟପବିତ୍ରା ପଟୁଂବନି ବଡ଼ ମାପସୁତା ପବିତ୍ରା ମଧକରି ସବୁ ସଜ କରିବ । ବର୍ଷ ବର୍ଷ ପରବଜାତ୍ରାମାନରେ ରାଜପ୍ରସାଦ ବିରବର ବାନା ପାଟଡ଼ୋର ବଳୀବ । ତଢ଼ାଉମାନ ଲାଗିକି ପାଟ ଡ଼ୋରୋଲୋ ହୋଇଲେ ଏ ଡ଼ୋରୋଅ ବଳିବ । ଏସବୁଠାକୁ ଭଣ୍ଡାରୁ ପାଟଶୁତା ନେଇ ଏ କୋରା ସୁତା ପାଟଡ଼ୋରୋଅ ବଳି ତୁଳପଳ କରି ଭଣ୍ଡାରେ ପଇଠ କରୀବ ।।

**ଉତରାସେବକ ସେବକ ସେବାକୁ ୧୯**

ଏ ଦେଓଳେ ଜେତେଠାକୁ ଉତ ପାଗଲୁଗା ଲାଗିବ ରଥ ମଣ୍ଡଣି ମଧ କରି ଏଥକୁ ଭଣ୍ଡାରୁ ଲୁଗା ନେଇ ନେଇ ସବୁ ଛାପକରି ପଇଠ କରିବ ।

**ଏ ସୁଆଁସିଆ ସେବକ ସେବାକୁ ୧୯**

ଏ ଦେଉଳେ ପଥର କମ କାଠ କମ ଜେତେ ଆଡ଼ତି ହୋଇବ ସେ ଆଡ଼ତୀରେ ପଥୁରିଆ ବଢ଼ାଇ ସାଗେଂ ମିସି ଆଡ଼ତୀ କରୀବ । ଆଡ଼ତି ମାନରେ ସାଲାମ ଘରମାନ ହୋଇବ ଏ ଘରମାନ ତୋଳିବ ଦୋଳଜାତ୍ରା ସ୍ନାନଜାତ୍ରାରେ ଗୟଳମାନ ପୋତି ଆନାସ ମଣ୍ଡଣି ଗୟଳମାନକଂ ଉପରେ ଉଠୀ ବାଧିବ । ସ୍ନାନଜାତ୍ରା ଗୁଣ୍ଡିଚାଜାତ୍ରାରେ ସିଗାଂସନରେ ରଥରେ ମଧକରି ପହଣ୍ଡିବିଜେ ଚାର ପଟା ବାନ୍ଧିବ ଇନ୍ଦ୍ରଉଛବ ଜାତ୍ରାରେ ସିଂଗଦୁଆରଠାରେ ... ଇନ୍ଦ୍ର ଧ୍ୱଜ ଜାତ୍ରା **[126a]** ଦିନ ପାହାନ୍ତି ଇନ୍ଦ୍ର ଧ୍ୱଜ ଫେ...ରେ ପକାଇବ ଇନ୍ଦ୍ର କୋଠ ହେଲା ଲୁଗା ଭଣ୍ଡାରେ ବାହୁଡ଼ା କରିବ । ଅଣସର ଜାତ୍ରା ତାଟୀ

ମଣ୍ଡଣି କରି ବାନ୍ଧିବ । ଏ ପନ୍ଦରଦିନ ପାହାନ୍ତି ଟାଟୀ ଫେଡ଼ି ବାହାର କରିବ, ରାଜବିଜେ ଶ୍ରୀନଅର ଶୁଆଁସ ଆଡ଼ତୀ କରିବ ॥

**ସୁଆଁସ ସରଘର ମେଇକାପକୁ ୧୯**

ଏ ସୁଆଁସିଆ ସେବା ଜେତେ କାଠପଟା ଛେଦରା ରହିବ ତାହାସବୁ ସାଇତୀବ । ଶ୍ରୀଗୁଣ୍ଡିଚା ଜାତ୍ରା ବଢ଼ିଲା ଉତାରେ ତିନି ରଥର ଲୁହା ଜେତେକ ହୋଇବ ତାହା ... ।

**ଏ ରୀପୁକାର ମାହାରଣା ସେବକ ସେବାକୁ ୧୯**

ତୁଳୀକରୀ ଦେଉଳରେ ଏ ପଥରକମ ଆଡ଼ତି ହୋଇଲେ ... ... ଲତାକମମାନ ହୋଇଲେ ଏ ଗଢ଼ିବ, ଖଟ ଖଟଦୋଳି ପଲଙ୍କ ବିମାନ ଖଟୁଲି ଏଥି କାଠକମ ଦାନ୍ତକମମାନ ପୁତୁଳିମାନ ଜେତେ ହୋଇବ ତାହା ଗଢ଼ିବ । ଶ୍ରୀଗୁଣ୍ଡିଚା ଯାତ୍ରା ରଥରେ ଠେକରା ପୁତୁଳିକମ ଜେତେ ସବୁ ଗଢ଼ିବ । ଚଣି ଲଗାଇବ ରଥ ବିଜେବେଳକୁ ରଥରେ ଝୁଂଆଳି ଜୋଡ଼ିବ । ଏଥି ସୁନାରୁପାମାନକୁଂ ଜୋଡ଼ିବ, ସାରଥିମାନକୁଂ ବସାଇବ । କୃଷ୍ଣଜନମ ଜାତ୍ରା ଦିନକୁ ଚକଡ଼ାରେ ପୁତୁଳିମାନ ଗଢ଼ିବ । ସୂର୍ଯବଂସ ରାଜାମାନଙ୍କ ଦିନରୁ ରାମଜନ୍ମ କୃଷ୍ଣଜନ୍ମ ଯାତ୍ରା ବା ପ୍ରସ୍ତାପ ଭିଆଣହେଲାକୁ ଏ ପ୍ରସ୍ତାପମାନର କାଠର ଦେବତାମାନ ବାହାନମାନ ଅସୁରମୁଖମାନ ସବୁ ଗଢ଼ିବ ॥

**ଏ କମାର ମାହାରଣା ସେବକ ସେବାକୁ ୧୯**

ଦେଉଳ ସୁଆଁସ ଆଡ଼ତିରେ ଜେତେ ଲୁହା କମ ହେବ । ରଥ ଘଟଣରେ ଜେତେ ଜେତେ ଲୁହାକମ ଆଡ଼ତି ହେବ ଏଥକୁ ଏ ସରଘରୁ ଲୁହା ତୁଳାଇ ନେଇ କମ ଗଢ଼ି କମଣ ଏ ପାଡ଼ୀ ବେହରଣେ ଲୁହା ତୁଳାଇ ଦେବ । ଦୋଳମଣ୍ଡପ ତୋରଣା ଉସ୍ଥବମାନକଂ କଳସ ଉପରେ ମଧକରି ସୁ... ମାନ... ଲୁହା ନବ ଯେ ଗଜିଂବ **[126b]** ଗଢ଼ିବ । ରଥଜାତ୍ରା ପରେ ରଥରୁ ବାହାର କରି ତୁଳାଇ ସରଘରେ ପଇଠ କରିବ । ଅଣସର ଯାତ୍ରା ଟାଟୀ ଭୀତର ଶସ୍ତ୍ର ଲାଗିକି ଦେଇତାପତି ମୁଳେ ଦେବ । ଲୁହାର ଠୀଆଖୁର ଗୋଟା ଧାଖମ ଗୋଟା । ହାଥ ବାରସି... ଗୋଟା ଗାଏ ମୃତୀ ତାସ... ସୂର୍ଯବଂଶ ରାଜାମାନକଂ ଦିନର କୃଷ୍ଣଜନ୍ମ ଜାତ୍ରା ପ୍ରସ୍ତପ ଭିଆଣ ହୋଇଲାକୁ ଏ ବସୁଦେବ ଦେବକି ବନ୍ଦି ହୋଇଥିଲାକୁ କଂସର ବୋଲ ପ୍ରମାଣେ ବସୁଦେବ ଦେବକି ସାକୋଳି କାଟିବ ।

**ଏ ପଥୁରିଆ ମାହାରଣା ସେବକ ସେବାକୁ ୧୯**

ଏ ଦେଉଳମାନର ଭଗାଂତୁଟା ପଥର କମ ଆଡ଼ତି... ଏହା ଗଢ଼ୀବ । ପରବଜାତ୍ରାମାନରେ ସାଲାଘରମାନରେ ଇଟା ହୋମକୁଣ୍ଡ ଗଢ଼ିବ, ପଥରକମ ଆଡ଼ତୀ ଜେତେକ କମ ଘଟଣା ହୋଇବ ସବୁ ଗଢ଼ିବ ॥

## ଏ ଚିତ୍ରକାର ମାହାରଣା ସେବାକୁ ୧୯

ଅଣସର ଜାତ୍ରାକୁ ଭଣ୍ଡାରୁ ମାଠ ଲୁଗା କାଠୀ ୭୫ ନେଇ ତିନି ଚିତ୍ରପଟ ଲେଖି ପଇଠ କରିବ । ଶ୍ରୀଗୁଣ୍ଡିଚା ଜାତ୍ରାର ଜେତେ ସବୁ ଲେଖନ କରୀବ । ପରବଜାତ୍ରା... ଚିତ୍ରପଟ ଗୋ୩୯ ଭଣ୍ଡାରୁ ମାଠଲୁଗା କାଠୀ ୭୫ ନେଇ ୩ ଚିତ୍ରପଟ ଲେଖି ପଇଠ କରିବ । ଜନମ ଜାତ୍ରା ବ୍ରହ୍ମାଣ୍ଡପଟୀ ଲେଖିବାକୁ ଭଣ୍ଡାର ମାଠଲୁଗା କାଠୀ ଭଣ୍ଡାରୁ ୧ ନେଇ ଚିତ୍ର ପଟୀ ଲେଖି ପଇଠ କରିବ । ଇନ୍ଦ୍ରଉଛବ ଜାତ୍ରା ଇନ୍ଦ୍ର... ଜାତ୍ରାମାନଙ୍କୁଂ ଲେଖିବ... ... ୧ ଏ ନେଇ ଚିତ୍ରକାମ ଦେବ । ଚିତ୍ରପଟ ଲେଖିବ ପଠୀ କରିବ । ନୃସିଘଂ ଉଛବ ଜାତ୍ରାରେ ନୃଗଂ କାଠ ମୁଁହ ଚିତ୍ର କରିବ । ବାମନଜନ୍ମ ଜାତ୍ରାରେ ତ୍ରିବିକ୍ରମ ମୂର୍ତ୍ତି ପାଦଚିତ୍ର କରିବ । ଦେବସ୍ନାନ ମଣ୍ଡପ ଦୋଳମୋଣ୍ଡପରେ ଚିତ୍ର ଲେଖିବ । ଶ୍ରୀଗୁଣ୍ଡିଚା ଜାତ୍ରା **[127a]** ... ... କଳାପାବଛ ଦୁଇବାଡ଼ରେ ଜୟ ବିଜୟ ଦୁଇ ପାଖରେ ହଳତାଳ କଳା ଘେନି ଲେଖନ କରିବ । ସବୁ ବନକମାନକୁ କୋଠୁ କଉଡ଼ି ପାଇବ । ସୂର୍ଯବଂସେ ପୁରୁସୋତ୍ତମଦେବ ରାଜା କଲାରୁ ଦିନରୁ ରାମଜନ୍ମ ଜାତ୍ରା ପ୍ରସ୍ତାପମାନ ଭୀଆଣ ହୋଇଲା । ପ୍ରସ୍ତାପ ମାନରେ କାଠ ମୁଁହମାନ ସବୁ ଚିତ୍ର କରିବ ।

## ଏ ଜଉଆ ସେବକ ସେବା ଭୀଆଣକୁ ୧୯

ଏ ପିଣ୍ଡିକା ପେଣ୍ଡିଆ ଭଣ୍ଡାର ଗଣ୍ଡଡ଼ିମାନରେ ପରବ ଜାତ୍ରା ରାଜପ୍ରସାଦ ତୋଳା ମୁଣା ଉଲାର ବାଉଁସିଆମାନରେ ହରିବଲଭ ଚାଟରେ ମଧ କରି ଜଉ ଲଗାଇବ । ଶ୍ରୀଗୁଣ୍ଡିଚା ଜାତ୍ରା ରଥ ଦୁଆର ଚାପମାନରେ ... ... ଜେତେଠାରେ ଜଉମାଳ ଦେବାର ତେତେଠାରେ ଜଉମାଳ ଦେବ । ଜେତେଠାରେ ମୁଦ ଦେଆହୋଇବ ତେତେଠାରେ ଜଉ ଲଗାଇବ ।

## ଏ ଚୁନରା ମୁଦୁଲୀ ସେବକ ସେବାକୁ ୧୯

ଏ ଦେଉଳ ବେଢ଼ା ଭିତରେ ଜେତେ ଚୁନ ଲାଗିବ ଏ ସବୁ କୋଠୁଁ କଉଡ଼ି ଘେନି ଚୁନ ନଗାଇବ ଏ... ପ... ସଂ୯ ଧୂପ ବଢ଼ୀଲା ଉତାରେ କୋଠୁଁ କୁମ୍ଭାର ବିସେଇଠାରୁ ନୁଆ କୁଡୁଆ ଗୋ୩ ଅଖଣ୍ଡ ବିସୋଈଠାରୁ ମାଲପା ମା୨୪ଣିକା ଭଣ୍ଡାର ନୁଆ କରେଆ ଗୋ୩ ସରଘରୁ ଲୁଗା... ମା୩ ଘେନି ମହାଦିପ ସଜ କଲା ଉତାରୁ ଧୂପ ବଢ଼ି ବନ୍ଦାପନା ହେଲା ଉତାରୁ ପଣ୍ଡା ଆଣି ବାହାରେ ଦେବ ... ଏ ଦେଉଳେ ... ଜଗମୋହନ ମଣ୍ଡପରେ ମଧ ଦିପ ବସାଇବ ଚନ୍ଦ୍ରଉଦିଆ ତିନିଗୋଟା ବଡ଼ଦେଓଳ ଉପରେ ଜାଳିବ । ଜଗମୋହନ ମଣ୍ଡପରେ ଜେ ମହାଦିପ ଗୋଟିକ ବସାଇଥିଲା ସୂର୍ଯବଂସେ ପୁରୁସୋତ୍ତମଦେବ ରଜା ଏ ଭୋଗମୋଣ୍ଡୋପ ତୋଳାଇଲାକୁ ଉଭୟ ମଣ୍ଡପରେ... **[127b]** ମହାଦୀପ ବସାଇବ । ଦେଉଳମାନରେ ଗଛ ଉଠୀଲେ ଏ ଗଛ କାଟିବ । ... ... ଦକ୍ଷିଣ ଦୁଆର ଚୁନ ଦେବ । ଦେବସ୍ନାନ ଜାତ୍ରାରେ ସ୍ନାନମଣ୍ଡପରେ

ଚୁନଦେବ, ଜଗମୋହନ ଦୁଆର ସାତ ପାଆଛଠାରୁ ସ୍ନାନମଣ୍ଡପ ସରିକି ବିଜେ ପହଣ୍ଡ ଚୁନଦେବ ଶ୍ରୀଗୁଣ୍ଡିଚା ଜାତ୍ରାରେ ଗୁଣ୍ଡିଚା ନବର ଚୁନ ଦେବ । ଏ ମଣ୍ଡପ ଉପର ଏ ଜଗମୋହନ ପାଚେରିମାନ ମଧ କରି ଚୁନଛିଟିକା ଦେବ । ଦୋଳମୋଣ୍ଡପ ଚୁନରେ ଛିଟା... ଦେବ । ସ୍ନାନମଣ୍ଡପକୁ ବିଜେକଲା ଉତାରେ ଛାମୁ ଅଖଣ୍ଡ ସୁନାଦିପ ସିକଳା ଭଣ୍ଡାରେ ପଠୀ କରିବ । ଦେଓଳ ଉପର ଚକ୍ରରେ ଧଜା ପତାକାମାନ ବାଧିବ । ଗୁଣ୍ଡିଚା ନବର କନେକ ମଣ୍ଡପରେ ଚନ୍ଦୋଆ ବାନ୍ଧିବ । ଛାମୁ ଅଖଣ୍ଡ ଦିପ ସିକଳା ବାନ୍ଧିବ, ବଡ଼ଦେଓଳେ ଗୁଣ୍ଡିଚାଘରେ ମଧ ମେଳା କାଠ ଚାନ୍ଦୋଆମାନ ବାନ୍ଧିବ । ବାହୁଡ଼ା ଗୁଣ୍ଡିଚାବେଳେ ବିଜୟ କରିବାବେଳକୁ ସିଂହାସନ ଚୁନ ଦେଇଥିବ । କନକ ମଣ୍ଡପ ଚାନ୍ଦୋଆ ମେଲାକାଠ ଛାମୁ ଚାନ୍ଦୋଆ ରାସ ଅଖଣ୍ଡ ବଇଠା ଏମାନ ବାନ୍ଧିଥିବ । ଶ୍ରୀଗୁଣ୍ଡିଚା ଜାତ୍ରା ପହଣ୍ଡିବିଜେ ନିମନ୍ତେ ବାଇସି ପାଆଛେ ଚୁନଦେବ ।

## I.E. [ବନଯାଗ ଓ ପ୍ରତିମା ପ୍ରତିଷ୍ଠା ବିଧି]

### I.E.1 [ବନଯାଗ]

**[85a] ଶ୍ରୀପୁରୁଷୋତ୍ତମ ଶ୍ରୀଜଗନ୍ନାଥ ଦେବଙ୍କଂର ଦାରୁବହ୍ମ ଶ୍ରୀମୂର୍ତ୍ତି ଘଟଣକୁ ଶାସ୍ତ୍ର ପ୍ରମାଣେ ବନଯାଗ ବିଧି ୧୯** । ଶମ୍ଭୁକର ବଂସେ ବିଦ୍ୟାକର ବାଜପେଇ ପଦ୍ଧତି ପ୍ରମାଣେ ଏ ଉପକରଣ ସାମିଗ୍ରି ୧୯ କାଳସୁଧୋ ଜେଉଂ କାଳେ ଜେଉଂ ରଜା ହୋଇଥିବ ସେ ଆଚାର୍ଯ ବ୍ରହ୍ମା ସଦିଶ ପ୍ରତିନିଧି ବରଣ କରିବ ଏ ବରଣ ୧୯ ଶ୍ରୋତ୍ରିୟ ବ୍ରାହ୍ମଣ ଜ୪ ଉପବରଣ ... ... **[85b]** ଜ୪୯ ନୁଆ ବଶ୍ରକୁ ତଡ଼ପ ଗୋ୨ ଲେ. ଗୋ୮ କୁଣ୍ଡଳ ଜୋଣ୍ଡି ୯ସୁନା ଚି୮ ସୁନା ମୁଦି ଗୋ୪୯ ଚି୮ ସୁନାଚକିଆ ଗୋ୪୯ ଚି୪ ଗାଏ ପଦଣ୍ଡ ସୁନା ମା୨ ନଡ଼ିଆ ପୁଜିଂଏ ୧ ଫୁଲ ଦନାଏ ୧ ସରସା ଚନ୍ଦନ ପ୍ଳ୧ । ସ୍ୱସ୍ତିବାଚନ ସାମିଗ୍ରିକି ୧୯ ନୁଆ ତଡ଼ପ ଗୋ୧ ସୁନା ଚକିଆ ଗୋ୧୯ ଚିଂ୩ ନଡ଼ିଆ ଗୋ୧ ଫୁଲ୧ ଚନ୍ଦନ ୧ ।

**ବରୁଣ ପୁଜା ୧୯** ଜଳ ପୁରି କଳଶ ଗୋ୧ ଆମ୍ବପତ୍ର ଗୁଡ଼ାଏ । ଏ କଳଶ ବେକକୁ କରିଆ ଗୋ୧ ଉପରକୁ ନଡ଼ିଆ ଗୋ୧ ଏ କୁମ୍ଭ ତଳକୁ ଧାନ ମା୧ । ଏଠାକୁ ଗୁଆଘୃତ ପୁରି ଦିପ ଗୋ୧୯ ବଇଷବ ଶ୍ରାଧକୁ ଆଭିଧେକ ଶ୍ରାଧକୁ ମଧକରି ପତ୍ର ଗୋ୧୦୯ ଉଆଚାଳ ମା୩୦ ବିରି ମା୫ ସୋରିସ ମା୫ ମୁଗ ମା୫ ଖରଡ଼ାଲୁଣ ମା୫ ଗୁଆଘୃତ ମା୫ ଏ ଦହି ଦସବଢ଼ା ୧୦ ହବିସ ପରିବା ଗୁଡ଼ାଏ ଗୁଆ ପାହିଏ ୧ ମାଘିତିଳ ଗୁଡ଼ାଏ କଦଳି ପତ୍ର ଖଣ୍ଡ ୨୦ ଫୁଲ ତୁଳସି ଦନାଏ ସରସାଚନ୍ଦନ ପ୍ଳ୧

**ନୃସିଂହ ପୁଜାକୁ ୧୯** ନଇବେଦ୍ୟ ୧୯ ସରୁସରକ ୧ ପଇଡ଼ ପୁଜିଂଏ ୧ ଫୁଲମାଳ ଗୋ୧ ସରସାଚନ୍ଦନ ପ୍ଳ୧ । ସିଦ୍ଧିଶାସ୍ତ୍ର ପୁଜାକୁ ୧ ନଇବେଦ୍ୟକୁ ସରୁସରକ

ପ୍ଳ ୫ ଫୁଲ ଦନାଏ ଚନ୍ଦନ ପ୍ଳ । ମଗଂଳାରୋପଣ ସମିଗ୍ରି ୧ ଗଙ୍ଗାମୃତିକା ଖଣ୍ଡିଏ ୧ ଗୁଆଦହି ୧ ଏ ଦୁଧ ୧ ଏ ଘୃତ ୧ ତ୍ରିସାଖା ଦୁବ ୧ ବରକୋଳିପତ୍ର ୧ ଗୋରୋଚନା ଖଣ୍ଡିଏ ୧ ସ୍ୱେତ ସୋରିସ ୧ କଂସାଦର୍ପଣ ଗୋ୧ ଶୁକ୍ଳଫୁଲ ସରସାଚନ୍ଦନ ବଢ଼ି ଏ ନଡ଼ିଆ ଗୋ୧ ଗୁଆଘୃତ ପୁରି ଦିପ ଗୋ୧ ଗାଏ ପଦାର୍ଥ ...

ଏ ଉତାରେ ଲକ୍ଷ୍ମି **[86a]** ନୃସିଂହଙ୍କୁଂ ଧ୍ୟାନ କରିଂ ପୃବ ଉତର ଈଶାନ ତିନି ଦିଗର ଜଉଁ ଦିଗରେ ଥିବ ସେ ଦିଗରଂ ଶିଳା ନର୍ତ୍ତକି ଦାରୁ ହୋଉ ଘେନିମ । ଚନ୍ଦନ, ଦେବଦାର ଲିମ୍ବ, ସମୀ, ମହୁଲ, ଅତସି, ଅସ୍ୱଛ, ଖଦିର, ବିଲ୍ୱ ଏ ବୃକ୍ଷମାନ ବ୍ରହ୍ମ କ୍ଷତ୍ରିୟ ବୈଶ୍ୟ ତିନି ଜାତିକି ଶୁଭ । କେନ୍ଦୁ, ନାଗେଶ୍ୱର ସାଜ ଅର୍ଜୁନ ଆମ୍ବ ସାଳ ଏତେ ବୃକ୍ଷମାନ ଶୁଦ୍ର ଜାତିକି ଶୁଭ । ଏତେଠାରୁଂ ଜେଉଂ ବୃକ୍ଷ ହୋଇବ ସେ ବୃକ୍ଷ ଜେଉଂଠାରେ ଥିବ ସେ ସ୍ଥାନ ସମକରି ସେ ଭୂମି ଜଳରେ ଧୌତକରି ଗୋମୟ ଘେନି ଲିପିବ, ସେଠାରେ ବାସୁଦେବଙ୍କୁଂ ଦିଗ୍‌ଦେବତାମାନଙ୍କୁଂ ମଧକରି ପୂଜା କରିବ । ଏଥକୁ ଝୁଡ଼ା ଫୁଲ ଦନାଏ ସାର ଚନ୍ଦନ ପ୍ଳ୧ ନୈବେଦ୍ୟକୁ ସରୁସରକ ବି୧ ଭୁତ କୃରମାନଙ୍କୁଂ ମାଂସ ହଳଦିଗୁଣ୍ଡା ଦହି ଛତୁଲେଆ ବିରିଖେଚେଡ଼ି ଏମାନ ବଳିଦେବ । ଏଥକୁ ବୋଦା ଗୋ୧ ହଳଦି ଗୁଣ୍ଡାକୁ ହଳଦି ପ୍ଳ୫ ଦହି ବଢ଼ାଏ ୧ ଛତୁଲେଆ ମଧ ଲେଆ ମାଣ ୨ ଖେଚେଡ଼ିକି ବିରି ମା୧ ଚାଳ ମା୧ ଘିଅ ମା୧ ଗାଏ ପଦାର୍ଥ ଅସ୍ତ୍ର ମନ୍ତ୍ରେ କରିଂ ବାୟୁବ୍ୟ କୋଣେ ଶସ୍ତ୍ରମାନଙ୍କୁଂ ପୁଜାକରିବାକୁ ଫୁଲ ଦନାଏ ସାରସଚନ୍ଦନ ପ୍ଳ । ନୈବେଦ୍ୟକୁ ସରୁସରକ ପ୍ଳ୧୦ ଏ ଉତ୍ତାରେ ମୂଳମନ୍ତ୍ରେ କରି ଅଷ୍ଟୋତ୍ତର ଶଏ ବାଲିସ୍ଥଣ୍ଡିଳରେ ଗୁଆଘୃତେ ହୋମ କରିବ । ଏଥକୁ ଗୁଆଘୃତକୁ ୧ ଅସ୍ତ୍ରମନ୍ତ୍ରେ କରି ସାନ୍ତିତୋୟରେ ବୃକ୍ଷକୁ ପ୍ରୋକ୍ଷଣ କରିବ କୁଶରେ କରି ବୃକ୍ଷରେ ପ୍ରତିମା ଲେଖିବ ମୂଳମନ୍ତ୍ରେ କରିଂ ବୃକ୍ଷକୁ ଆଲମ୍ବନ କରିବ ଶୁକ୍ଳ **[86b]** ବସ୍ତ୍ରେକରି ବୃକ୍ଷକୁ ଘୋଡ଼ାଇବ ଏଥକୁ ନୁଆ ଓଢ଼ା ଗୋ୧ ନୃସିଂହ ମନ୍ତ୍ରେ କରିଂ ରକ୍ଷା କରି କୁଶରେ ଘୋଡ଼ାଇ ଗନ୍ଧପୁଷ୍ପ ଧୂପଦୀପ ନୈବେଦ୍ୟରେ କରିଂ ପୂଜା କରିବ । ଏଥିକିଝଡ଼ା ଫୁଲ ତୁଳସି ଦନାଏ ସରସା ଚନ୍ଦନ ପ୍ଳ । ନୈବେଦ୍ୟକୁ ସରୁସରକ ବି୧ ପୁନର୍ବାର ମୁଳମନ୍ତ୍ରେ କରି ଅଷ୍ଟୋତ୍ତର ସଏ ବାଲି ସ୍ଥଣ୍ଡିଳେ ହୋମ କରିବ । ଏଥିକି ଗୁଆଘୃତକୁ ୧ ମନ୍ତ୍ରରାଜେ କରି ପୂର୍ଣ୍ଣ ଆହୁତି ଦେବାକୁ ନଡ଼ିଆ ଗୋ୧ ପୁନର୍ବାର ବିଷ୍ଣୁ ପୂଜା କରିବାକୁ ଫୁଲ ଚନ୍ଦନ ଧୂପଦୀପ ନୈବେଦ୍ୟ ଦେବ, ଏଥିକି ଝଡ଼ା ଫୁଲ ଦନାଏ ୧ ସରସାଚନ୍ଦନ ପ୍ଳ । ସିତଳକୁ ସରୁସରକ ବି୧ ଏ ପୂଜା ସାରିଂ ଆଜ୍ଞା ମାଗିଂ ଭୂତବଳି ଦେବ ଏ ଭୁତବଳିକି ଖେଚେଡ଼ିକି ବିରି ମା୧ ଚାଳ ମା୧ ଘିଅ ମା୧ ଏ ଭୁତକୃରମାନଙ୍କୁଂ କ୍ଷେମା କରାଇବ, ଏ ଆଚାର୍ଯ୍ୟ ବ୍ରହ୍ମାକୁ ମଧକରି ହବିସ୍ୟ ଭୋଜନକୁ ଉଆଚାଳ ମା୧୦ ଗୁଆଘୃତ ମା୫ ହବିସ୍ୟ ପରିବା ଗୁଡ଼ାଏ, ନୁଆହାଣ୍ଡି ଗୋ୧୦ ଲକ୍ଷ୍ମୀନୃସିଂହଙ୍କୁଂ ଆଜ୍ଞାମାଗି ବୃକ୍ଷ ପଶ୍ଚିମ ପାଖେ କୁଶ ଶଜ୍ୟା କରି ବସିଂ ସଂଜ୍ୟତ ହୋଇଂ ସ୍ୱପ୍ନର ଶୁଭାଶୁଭ ବିଚାରିବ । ଏ ସପ୍ନର ଶୁଭାଶୁଭ ଜାଣି ଆର ଦିନର ନିତ୍ୟକୃତ୍ୟ

ସାରି ଶଶ୍ତ୍ରମାନଙ୍କୁ ବୃକ୍ଷକୁ ପୂଜା କରି ଅର୍ଘ୍ୟଦେବ । ଅସ୍ତ୍ର ମନ୍ତ୍ରେକରିଂ ଅଭିମନ୍ତ୍ରଣ କରିଂବ । ବିଷ୍ଣୁ ସ୍ୱରପ କରି ଆପଣାକୁ ଚିନ୍ତାକରିବ । ବିଶ୍ୱକର୍ମା ସ୍ୱରପ କରି ବଢ଼ଇକି ଚିନ୍ତା କରିବ । ଶସ୍ତ୍ରକୁ ବିଶ୍ୱ ରପ କରି ଚିନ୍ତା କରିବ ବଢ଼ଇ ହାଥେ ଶସ୍ତ୍ର **[87a]** ଦେବ ବୃକ୍ଷର ମୁଖ ପୃଷ୍ଠାଦି ସ୍ଥାନମାନ ଦେଖାଇବ । ଏ ବୃକ୍ଷର ପୂର୍ବ କି ଉତ୍ତର କି ଇଶାନ ଏ ତିନି ଦିଗରୁଂ ଦିଗକରେ ପ୍ରତିମାର ମଥା କରିବ । ଉର୍ଦ୍ଧ୍ୱଭାଗରେ ପୃଷ୍ଟ କରିବ, ମଧଭାଗରେ ମୁଖ ଲିଙ୍ଗ କରିବ । ଏ ପ୍ରକାରେ ପ୍ରତିମା କ୍ରମ ବସାଇବ । ଏ ଉତାରେ ଏ ବୃକ୍ଷ ଛେଦନ ଉତାରେ ପାଷାଣ ପିଣ୍ଡିକା ଗୋଟିକ ଉପରେ ଥୋଇବ, ପିଣ୍ଡିକା ସହିତ କରି ସଗଂତରେ ବିଜେ କରାଇ ଏଥି ଉପରେ ନୁଆଧୋବ ବଶ୍ତ୍ର ଗୋ୧ ଏ ଘୋଡ଼ାଇ ବିଷ୍ଣୁ ସ୍ମରଣା କରି ମୂଳ ମନ୍ତ୍ରେ ଅର୍ଘ୍ୟ ଦେଇ ଶଙ୍ଖାଦି ମଙ୍ଗଳ ଧ୍ୱନିମାନ ପୁରଃସରେ କରି ଘେନି ଆସିବ । ଏଥକୁ ଦାରୁ ଜେତେ ଗୋଟା ଆଣିବ ତହିଂକିଂ ନୁଆ ପାଛୋଡ଼ା ମୃ୫ ଏ ଉତାରେ ପ୍ରାସାଦର ଉତ୍ତର ପାଖେ କର୍ମକୁଟିଘର ତୋଳାଇଂଥିବ, ଏ ଘରେ ବିଜେ କରାଇ ଅର୍ଘ ବଳି ଦେବ ଜେଉଂ ଦିଗମାନରଂ ବୃକ୍ଷ ଆଣିମାକୁ କହିଲା ଅଛି ସେ ଦିଗମାନରେ ଜେବେ ଶିଳା ବୃକ୍ଷ ନଥିବ ତେବେ ଆଗ ଦିଗର ଆଣି ଏ ଦିଗମାନରେ ଭୁମି ସଂସ୍କାର କରି ଏ ବୃକ୍ଷ ହୋଉ କି ଶିଳା ହୋଉ ଏହା ଭୁମିରେ ଥୋଇ ପୂର୍ବୋକ୍ତ ବିଧି କରିବ ଶିଳାବୃକ୍ଷ କହିଲା ଅଛି ଜେଉଂ ଦିଗମାନ ତହିଁ ନଥାଇ ଯେବେ ପଶ୍ଚିମ ଦିଗେ ଥିବ ତେବେ ଦିଗଦୋଷ ଶାନ୍ତି ପାଇଁ ପାତାଳ ନୃସିହ ମନ୍ତ୍ରେ ସହସ୍ରେ ଅଷ୍ଟୋତ୍ତର ଆହୁତିରେ କରି ହୋମ କରିବ ଏଥକୁ ଗୁଆ ଘୃତକୁ ୧୦ ମନ୍ତ୍ର ଉଦକେ ବୃକ୍ଷକୁ ପ୍ରୋକ୍ଷଣ କରିବ ଆଚାର୍ଯ୍ୟକୁଂ **[87b]** ସୁବର୍ଣ୍ଣ ଶୃଙ୍ଗି ଦାନଦେବ ବ୍ରହ୍ମାକୁଂ ଏଥିରୁ ଅଧକେ ଦକ୍ଷିଣା ଦେବ ସିଛି ମାହାରଣାକୁ ବଶ୍ତ୍ର ଅଳକାଂର ଦେଇଂ ସନ୍ତୋଷ କରାଇବ । ଏଥକୁ ମାଲକଢ଼ି ସୁନା ବଳାକୁ ମଧ କରି ସୁନା ମା୧ ସାଡ଼ିକି ଖଣ୍ଡୁଆ ଗୋ୧ ଏ ଉତାରେ ଶୁଭ ଦିନରେ ବୃକ୍ଷରେ ପାଙ୍ ମୁଖ କରି ମୁଖାଦି ଘଟଣା କରାଇ ଜଳରେ କରି ସ୍ନାନ କରାଇବ । ଦଧି ଦୂର୍ବାକ୍ଷତ କରି ବଳି ଦେବ ଆଗମ ମନ୍ତ୍ରେ କରି ଗନ୍ଧାଦି କରି ପୁଜା କରିବ । ଏଥକୁ ବସା ଦହି ହାଣ୍ଡିଏ ୧ ଗନ୍ଧ ଚନ୍ଦନକୁ ସରସାର ଚନ୍ଦନ ପ୍ଲ । ଗୁଗୁଳ ମା୧ ଦୁବ ଲୋଚିଏ, ବରକୋଳି ପତ୍ର ଗୁଡ଼ାଏ ୫ଡ଼ା ଫୁଲ ଦନାଏ, ହଳଦିଆ ଚାଳ ମା.. । ଏ ଉତାରେ ଶିଛି ମାହାରଣା ଘସମାଜ କରି ପ୍ରତିମା ଘଟଣ କରିବ ।

ଏଥକୁ **ଦାରୁବ୍ରହ୍ମ ଘଟଣା** ୧୮ କେହୁଣିସି କାଳରୁଂ ଶ୍ରୀମୁଖ ଆଜ୍ଞା ପ୍ରମାଣେ ଏ ଶ୍ରୀମୂର୍ତ୍ତି ବିଶ୍ୱାବସୁ ଶବର ବିଦ୍ୟାପତି ବ୍ରାହ୍ମଣ ବଂସ ଥାଇ ଘଟଣା କରିବେ । ଏଥକୁ କେହୁଣିସି ସଂହିତାମାନକରେ ବଚନ ଅଛି ଜେତେ ବୃକ୍ଷମାନ ପ୍ରତିମା କରିବ ବୋଲି କହିଲା ଅଛି ଏଥୁଂ ଲିମ୍ବ ଗଛ ପ୍ରତିମା କରିବ, ଏଥକୁ ଏ ବୃକ୍ଷର ପରିମାଣ ମଧମାଙ୍ଗୁଷ୍ଟି ଜବରେ ସମଚଉରସ ଜ୨୪ବ ଲେଖାଏ ଛୟାଣୋଇ ଜବ ୯୬ ହୋଇବ, ଏ ବୃକ୍ଷ ଏକ

ସାଖା ୨ ସାଖା ୩ ସାଖା ନୋହିବ ଚତୁର୍ଥ ସାଖା ହୋଇବ । ଏମନ୍ତ ପ୍ରକାରେ ଚାରି ସାଖା ହୋଇବ । ଏମନ୍ତ ପ୍ରକାରେ ୪ ଗୋଟା ବୃକ୍ଷ ଆଣିମ, ଏ ବୃକ୍ଷମାନେ **[88a]** ଗ୍ରାମ ସନିଧେ ନ ଥିବେ । ଏ ବୃକ୍ଷମାନକେ ଚଢ଼ଇମାନେ ବସା କରିନଥିବେ । ପଞ୍ଚନଖି ଜନ୍ତୁ ଏ ବୃକ୍ଷରେ ଘସିହୋଇ ନଥିବେ । ଏ ବୃକ୍ଷରେ ଆନ ବୃକ୍ଷମାନର ଡ଼ାଳ ଘୋଡ଼ାଇ ହୋଇ ନ ଥିବ, ପବନ ଆଘାତେ ଡ଼ାଳମାନେ ଭଗନସ୍ତ ହୋଇନଥିବେ । ବଜ୍ର ସୁଚି ପଡ଼ି ବୃକ୍ଷ ଫାଟିନଥିବ ଅଗ୍ନିତେଜ ଏ ବୃକ୍ଷମାନରେ ଲାଗି ନ ଥିବ । ବୃକ୍ଷମାନେ ପାଣି ସନିଧେ ଥିଲେ ଉପୁଡ଼ି ପଙ୍କରେ ପଡ଼ି ନଥିବ, ଦେଖିବାକୁ ବୃକ୍ଷ ଶୋଭନିୟ ହୋଇବ । ଏମନ୍ତ ବୃକ୍ଷ ହୋଇବ ଜେଉଂ କାଠରେ ପ୍ରତିମା ଘଟଣ ହୋଇବ ଏଥକୁ ବିଶ୍ଵକର୍ମା ମଧମ ଆଙ୍ଗୁଷ୍ଟି ଜବ ମାପରେ ମାପ ଘେନା ହୋଇବ ।

**ଶ୍ରୀଜଗନ୍ନାଥ ଦେବଙ୍କଂର ଚକ୍ରାକୃତି ଘଟଣା** ୧୰ ଏ ଉଚ ହୋଇବ ଜବ ୮୪୰ ଏ ହୋଇବ ଭାଗ ୩୨୰ ତ୍ରିମୁଣ୍ଡିଠାରଂ ଶ୍ରୀମୁଖ ସରିକି ଭାଗ ୧୪୰ ଜ୩୬୴ ଶ୍ରୀମୁଖ ତଳେ ଉରାଖ ଭାଗ..୰ ଜବ୧୨ ଏ ତଳେ ହିଆଭାଗ.. ୰ ଜବ ୯ ଗାଏ ପଦ ୨୰ ଭାଗ ୮୰ ଜବ ୨୧ ପରିଧାପନ ଭାଗ ୪୰ ଜବ ୧୦୳ ଶ୍ରୀପୟର ଭାଗ ୬୰ ଜବ ୧୫୴ ଗାଏ ପଦ..୰ ଭାଗ ୩୨୰ ଜବ ୮୪ ଯାଇ ଚତୁର୍ଭୁଜ ନିମନ୍ତେ ପାରସ୍ୱ ଭୁଜ ଗୋ୨ ଶ୍ରୀମୁଖ ଦୁଇ ପାଖରେ ତ୍ରିମୁଣ୍ଡି ସରିକି ମିସିଂ ନ ଦିସିବ ଦିଶିବା ଶ୍ରୀଭୁଜ ଗୋ୨୰ଏ ଭୁଜ ଗୋ୧୰ଜବ ୪୨ ଲେଖାଏ ଜବ ୮୪ ହୋଇବ । ଏ ପ୍ରତି ଶ୍ରୀମୁଖ ଦାରୁ ଜବ ୨୪ ଏ ସଗଂତେ ମିସିଂ ନ ଦିସିବ । ପାରଷ୍ୱଭୁଜ ଗୋ୨ ଜ୮ ଲେ ଜବ ୧୬ ଗାଏ ପଦ ୨୰ ଶ୍ରୀ**[88b]**ମୁଖ ପ୍ରତି ଜବ ୪୦... ଖୋଆମୁଣ୍ଡି ଗୋ୨୰ ଏ ଗୋ୧୰ ଜବ ୨୨ ଲେଖାଏ ଜବ ୪୪ ଗାଏ ପଦ ୨୰ ପ୍ରତି ଜବ ୮୪ ଖୋଆମୁଣ୍ଡିଠାରୁଂ ମୁଠି ସରିକି ଭୁଜ ଗୋ୧୰ ଜବ ୪୨ ଲେଖାଏ ଭୁଜ ଗୋ୨୰ ଜବ ୮୪ ଏ ପ୍ରକାରେ ଚକ୍ରାକୃତି ଘଟଣା ୧ ॥

**ଶ୍ରୀବଳରାମଦେବଙ୍କଂର ଶଙ୍ଖାକୃତି ଘଟଣା** ୧୰ ଏହି ପ୍ରକାରେ ଉଚ୍ଚ ଜବ ୮୪୰ ଭାଗ ୩୨୰ ସପ୍ତଫଣାଠାରଂ ଶ୍ରୀମୁଖ ସରିକି ଭା୧୨୰ ଜବ ୩୦୴୳ ଶ୍ରୀମୁଖ ଭାଗ.. ୰ ଜବ ୨୪୰ ଏ ଉପରେ ଲାଲାଟ ପାଟି ଜବ ୳ ଏ ଉପରେ ସପ୍ତଫଣା ଜବ ୬ ଗାଏ ପଦ ୩୰ ଭାଗ ୧୨୰ ଜବ ୩୦୳ ଶ୍ରୀମୁଖ ତଳେ ଉରାଖ ଭାଗ ୪୰ ଜବ ୧୦୳ ଏ ତଳେ ହିଆ ଭାଗ ପରିଧାପନ ଭାଗ ୬୰ ଜବ ୧୬ । ଶ୍ରୀପୟର ଭାଗ ୧୦୰ ଜ୨୬୴ ଗାଏ ଭାଗ ୩୨୰ ଜବ ୮୪ ପାରସ୍ୱଭୁଜ ଗୋ୨୰ ଏ ଗୋପନୀଥ ନିମନ୍ତେ ଶ୍ରୀମୁଖ ସଗଂତେ ତ୍ରିମୁଣ୍ଡି ସରିକି ମିସିବ ଭୁଜ ଗୋ୧୰ଜବ ୪୨ଲେଖାଏ ଗୋ୨୰ ଜବ ୮୪ ପ୍ରତିଜବ ୭୩୳୰ ଭାଗ୨୮୳ ଶ୍ରୀମୁଖ ଓସାର ଭାଗ ୫୰ ଜବ୧୩୵ ଏ ସଗଂତେ ମିସି ନ ଦିସିବ ପାରୁସ୍ୱ ଭୁଜ ଗୋ୨୰ ଓସାର ଜବ ୭

ଲେଖାଏ ଜ୧୪ ଗାଏ ପଦ ୨୦ ଜବ ୨୭୳ ଖୋଆମୁଣ୍ଡି ଗୋ୨୦ ଏ ଗୋ୧୦ ଜବ୨୩ ଲେ. ଜ୪୬ ଗାଏ ପଦ ୨୦ ଜବ ୭୩୳ ଶ୍ରୀବଳରାମଦେବଙ୍କ ଭୁଜ ଗୋ ୨୦ ଭୁଜ ଗୋ୧୦ ଖୋଆମୁଣ୍ଡିଠାରଂ ମୁଠି ସରିକି ଜବ ୩୬୴ ଲେଖାଏ ଜବ ୭୩୴ ଏ ପ୍ରକାରେ ଶଙ୍ଖାକୃତି ଘଟଣା ୧॥

**ଶ୍ରୀସୁଭଦ୍ରାଦେବି[89a]ଙ୍କର ପଦ୍ମାକୃତି ଘଟଣା** ୧୦ ଉଚ଼ ଜବ ୫୨୳୦ ଭାଗ ୩୨୦ ଏ ଭାଗ ୧୦ ଜବେ ୧୳୰: ଲେ ତ୍ରିମୁଣ୍ଡିଠାର ଶ୍ରୀମୁଖ ସରିକି ଭାଗ ୧୨୦ ଜବ ୧୯୳୷ଧ ଶ୍ରୀମୁଖ ଜବ ୧୬୳୷ ଖୋସା ଜବ ୩ ଗାଏ ପଦ ୨୦ ଜବ ୧୯୳୷ ହିଆ ଭାଗ ୨୦ ଜବ ୩।/ ପରିଧାପନ ଭାଗ ୧୨୦ ଜବ ୧୯୳୷ ଶ୍ରୀପୟର ଭାଗ ୬୦ ଜବ ୯୴/ ଗାଏ ପଦ..୦ଭା୩୨ ଜବ ୫୨୳ ପ୍ରତିଭାଗ ୧୬୦ ଜବ୨୬ । ଏ ବାମ ନୟନ ତଳେ ଓହୋଫୋଡ଼େ ବ୍ରହ୍ମରନ୍ଧ୍ର ଗୋ ୧ ଏ ଶ୍ରୀପୟର ସରି ଗୋପନୀଅ ଭୁଜ ଗୋ୨ ଗୋପନୀଆ ଆଉ ଏ ହସ୍ତ ଭୁଜ ଗୋ୨ । ଏ ପଦ୍ମାକୃତି ଘଟଣା ॥

**ଶ୍ରୀସୁଦର୍ଶନ ମୂର୍ତ୍ତି ଗଦାକୃତି ଘଟଣାକୁ ୧୦** ଉଚ଼ଭାଗ ୩୨୦ ଜବ ୮୪ ପ୍ରତିଭାଗ ୮୦ ଜବ ୨୧ ଏ ମଧ୍ୟରେ ସୁବର୍ଣ୍ଣ ପ୍ଲ୧୬୦ ଚକ୍ର ଗୋଟାଏ ପସି ଏ ଗଦାକୃତି ଘଟଣା ୧ ଗାଏ ପଦ ୪୦ ଚକ୍ରାକୃତି ଘଟଣା ୧

ଏ ଉତାରେ ଶରିର ଗ୍ରହଣ ନିମନ୍ତେ ଶ୍ରୀଅଙ୍ଗ ଭିତରେ ଶୀରମାନ ନିମନ୍ତେ ପାଟସୁତା ବଳାହୋଇ ଡ଼ୋର ଲାଗିହୋଇ ଏ ସୁତାରେ ସପ୍ତାବରଣ ଲାଗିହୋଇବେ । "ତ୍ୱକ ସୃକ୍ ମାଂସ ମେଦୋଽସ୍ଥି ମଜ୍ଜା ଶୁକ୍ରାଶ୍ଚ ଧାତବଃ ।" ଏଥକୁ ଚର୍ମ ନିମନ୍ତେ ବସ୍ତ୍ର ଲାଗି ରକ୍ତ ନିମନ୍ତେ ନେତପାଟ ଲାଗି ମାଂସ ନିମନ୍ତେ ସର୍ଜଳସ ମେଦ ନିମନ୍ତେ ସୁବାସ ତୈଳ ଅସ୍ଥି ନିମନ୍ତେ ଚନ୍ଦନ ଶୁକ୍ର ନିମନ୍ତେ ଅଟକାଳି ଏ ପ୍ରକାରେ ସପ୍ତାବରଣ ଲାଗି ହୋଇବେ । ଏ ଉତାରେ ବନକ ଲାଗି ନିମନ୍ତେ ଆଗ କପୁର ଖଡ଼ି ଦେଇତାପତି ସଂସ୍କାର କରି ଶ୍ରୀଅଙ୍ଗେ ଲାଗି କରାଇଲା ଉତାର ଶ୍ରୀମୁଖ ସିଘାଂରି ଖଡ଼ି ଲାଗି କରାଇବ । ଝଡ଼ା **[89b]** ସାରେଆ ବନକ ଲାଗି କରାଇବ । ଶ୍ରୀବଳରାମଦେବଙ୍କୁଂ କୁନ୍ଦେନ୍ଦୁ ସମ ଧବଳ ପୁଣ୍ଡରୀକାକ୍ଷ ମୂର୍ତ୍ତି କରିବ । ନୀଳାଭ୍ର ସ୍ୟାମସୁନ୍ଦର ପୁଣ୍ଡରୀକାକ୍ଷ ମୂର୍ତ୍ତି ଶ୍ରୀଜଗନ୍ନାଥ ଦେବଙ୍କୁଂ କରିବ । ହରିଦ୍ରାବର୍ଣ୍ଣ କରିଂ ଶ୍ରୀସୁଭଦ୍ରା ମୂର୍ତ୍ତି କରିବ । ରକ୍ତବର୍ଣ୍ଣ ନିମନ୍ତେ ନେତ୍ର ବସ୍ତ୍ରେ କରିଆ ସେଦୀ ଶ୍ରୀସୁଦର୍ଶନ ମୂର୍ତ୍ତି କରିବ । ଏ ପ୍ରକାରେ ଚତୁର୍ଦ୍ଧାମୂର୍ତ୍ତି ବନକ ଲାଗି କରାଇବ ।

**ଶ୍ରୀବଳରାମଦେବଙ୍କଂର ଆୟୁଧ** ୧୦ ଶିପ୍ଳି ଶାସ୍ତ୍ର ପ୍ରମାଣେ ।

"ବଳଦେବଃ ଶ୍ଚତୁର୍ବାହୁଃ କୁଣ୍ଡଳୈକ ବିଭୂଷିତଂ ।
ଲଙ୍ଗଳୀ ମୁଷଳୀ ଦେବ ଗଦା ପଦ୍ମ ଧରୋ ବିଭୁଃ ॥

ଶଙ୍ଖଚକ୍ର ଗଦାପାଣୀ କର୍ତ୍ତବ୍ୟୋ ବରଦୋଽଥବା ।
ନୃତ୍ୟାତ୍ୟଂ ଚ ତଥାରାମଂ ଚକ୍ରବାହୁ ଶୃଣୁଷ୍ୱ ମେ ।
ବାମୋର୍ଦ୍ଧ୍ୱଂ ଲାଙ୍ଗଳଂ ଦଦ୍ୟାଦଧଃ ଶଙ୍ଖ ସୁଶୋଭନଂ ।
ମୃଷଳଂ ଦକ୍ଷିଣାର୍ଦ୍ଧଂ ତୁ ଚକ୍ରଂ ବା ଅଷ୍ଟଶୋଭନଂ ।
ଗଦାକୃପାଣଂ ବା ଦଦ୍ୟାତ୍ ସଂସ୍ଥାନେ ଶଙ୍ଖ ଚକ୍ରୟୋ ॥''

**ଶ୍ରୀଜଗନ୍ନାଥ ଦେବଙ୍କର ଆୟୁଧ ।**

ବାସୁଦେବଂ ଚ କର୍ତ୍ତବ୍ୟଂ ଚତୁର୍ବାହୁଃ ସୁରେଶ୍ୱରଂ ।
ଦକ୍ଷିଣୋପରି ଚକ୍ରଂ ତୁ ପଙ୍କଜଧ୍ୟୋଃ ପରିନୟେତ୍ ॥
ବାମୋପରିଗଦା କାର୍ଯ୍ୟୋଶଙ୍ଖ ବଧଃ ସୁଶୋଭନଂ ॥୦॥

**ଶ୍ରୀସୁଭଦ୍ରା ଠାକୁରାଣିକଂ ଆୟୁଧ ।**

**I.E.2 [133b...] ... ପ୍ରତୀମା ପ୍ରତିଷ୍ଠା ବିଧି ୧୮**

ହୟଶିରିଶ ପଚଂରାତ୍ର ବିଧିରେ ଅକ୍ଷର ନ୍ୟାସ କରିବ କେଶବାଦି କ୍ରାହ୍ମମଣ୍ଡଳେ ଦ୍ୱାଦଶାକ୍ଷର ମନ୍ତ୍ରେ ଦ୍ୱାଦଶାଆଦିତ୍ୟମାନକୁଂ ପୂଜାକରି ତନ୍ତ୍ରୋକ୍ତ ସୋଡ଼ସ କଳା ସୋମ ଧ୍ୟାନ କରି ତହିଁ ସୌରସା ଏ ଶକ୍ତି କି ଧ୍ୟାନ କରିବ । ... ... **[134a]** ନାନା ପ୍ରକାରେ ଅଳଂକାର ଶୁବର୍ଣ୍ଣ ପୁସ୍ୟ ଚନ୍ଦନ ଅଗୁର କସ୍ତୁରୀ ସର୍ଗ ଧୂପରେ କରି ଚାରି ଦିଗରେ ଦିପମାନ ଦେଖାଇବ । କୁଣ୍ଡମାନକଂରେ ବୈଷ୍ଣବାଗ୍ନି ଜାତ କରି ଘୃତାକ୍ଷତ କରି ବୁଢ଼ା ଆଗୁଂଠି ଠାରୁ ତର୍ଜନି ଅଗୁଂଠୀ ସରି ମାପେ ପଲାଶ ସମିଧ କାଷ୍ଠରେ ସହସ୍ରେ ଅଷ୍ଟୋତ୍ତର ଲେଖାଏ ଚାରି କୁଣ୍ଡରେ ହୋମ କରିବ । ... ବ୍ରାହ୍ମଣମାନେ ଘୃତରେ ... ଲେଖାଏ ଚାରି କୁଣ୍ଡରେ ହୋମ କରିବେ । ... ସହସ୍ରେ ଲେଖାଏ ଏ ଚାରି ଉତାରେ ଆଚାର୍ଯ୍ୟ କୁଣ୍ଡରେ ହୋମ କରିବେ । ଆଚାର୍ଯ୍ୟ ମଧୁରେ ଓ ଘୃତରେ ହୋମ କରି ପାଦ ଦୁଇ କ୍ଷୁଇବ । ଦଧି ହୋମକରି ନାଭି କ୍ଷୁଇବ । ଦୁଧ ହୋମ କରି ହୃଦୟ କ୍ଷୁଇବ । ମଧୁ ହୋମ କରି ଶିର କ୍ଷୁଇବ । ଏ ଉତାରେ ମୂଳ ମନ୍ତ୍ରେ ... ବଇଦିକ ମନ୍ତ୍ରେ ବ୍ୟଜନ ଦେବ । ବୈଦିକ ମନ୍ତ୍ରେ ... ...

**[131b]...** କଜଳରେ କରି ସ୍ନାନ କରାଇବ । ଓସଧି ଜଳରେ ସ୍ନାନ କରାଇବ । ପଂଚ କଷାୟ ଜଳରେ ସ୍ନାନ କରାଇବ । ପଚଂଗବେ କରୀ ସ୍ନାନ କରାଇବ । ଫଳତୋୟରେ କରି ସ୍ନାନ କରାଇବ । ଉତର ଦିଗ କୁମ୍ଭେ ସ୍ନାନ କରାଇବ । ଦକ୍ଷିଣ କୁମ୍ଭେ ସ୍ନାନ କରାଇବ । ପଛିମ କୁମ୍ଭେ ସ୍ନାନ କରିଆଇବ । ଏ କୁମ୍ଭମାନ ସବୁ ବଇଦିକ ମନ୍ତ୍ରମାନରେ କରି ସ୍ନାନ କରାଇବ । ମୁରାମାସି ଅଏଁଳା ଚାଉଳା ପିଠୁଆଉ ଏମାନ

ଶିରେ ବୋଲି ଗନ୍ଧଜଳରେ କରି ସ୍ନାନ କରାଇବ । ଏ ଉତାରେ ବଇ.. ମନ୍ତ୍ର ପଢ଼ି ଏକାଶି ଘଟ ସ୍ନାନ କରାଇବ । ଆଗମ ମନ୍ତ୍ରେ କରି ପରମେଶ୍ୱରକୁଂ ଆବାହନ କରିବ ଶୁକ୍ତିକେ ମନ୍ତ୍ରେକ ମନ୍ତ୍ରେ କରି କଉତୁକ ସୂତ ବାହାର କରିବ । ସୁବର୍ଣ୍ଣ ପାତ୍ରେ ମର୍ଘ ଦେବ । ଶୁକ୍ତି ମନ୍ତ୍ରେ ପାଦ୍ୟ ଦେବ । ବଇଦିକ ମନ୍ତ୍ରେ ମଧୁପର୍କ ଦେବ । ଆଚମନିୟ ଦେବ । ବଇଦିକ ମନ୍ତ୍ରେ ବସ୍ତ୍ର ଘେନି ଶ୍ରୀଅଗଂ ପୋଛିବ । ବଇଦିକ ମନ୍ତ୍ରେ ମାଲ୍ୟ ଦେବ । ଯଜ୍ଞୋପବିତ ଉତୁରି ଦେବ । ବଇଦିକ ମନ୍ତ୍ରେ ପୁଷ୍ପି କରିବ ଧୂପ ଦେବ ଦିପ ଦେବ । ବଇଦିକ ସୁକ୍ତେ ଅଙ୍ଗଂନ ଦେବ । ବଇଦିକ ମନ୍ତ୍ରେ ଗୋରୋଚନା ତୀଳକ ଦେବ । ଶ୍ୱେତ...ରବ ଦର୍ପଣ ଦେଖା**[132a]**ଇବ । ... ନୂଆ ଧୋବ ବସ୍ତ୍ର ଦୁଇ ଗୋଟୀ ଆଦି କରି ପୁଜାକରିବ । ଚାମରମାନ ପକାଇ ଶଂଖାଦି ବାଦ୍ୟମାନ ବଜାଇ ଆଗମ ମନ୍ତ୍ରେ କରୀ ଆଗ୍ୟା ମାଗିଂ ସ୍ନାନ ମଣ୍ଡପକୁ ବିଜେକରାଇ ନେବ । ତହିଁ ଉଦ୍ର ପିଠରେ ବସାଇ ଗନ୍ଧତୋୟରେ କରି ସୁଧତୋୟରେ କରି ସ୍ନାନ କରୀ ବସ୍ତ୍ରେ ଆଚ୍ଛାଦି କରି ପୁଜା କରିବ । ସିଳିପିମାନକୁଂ ବସ୍ତ୍ର ଅଳଂକାର ଦେଇ ସନ୍ତୋଷ କରାଇବ । ବାମୁଣମାନକୁଂ ପୂଯା କରି ଆଚାର୍ଯ୍ୟକୁ ଶୁବର୍ଣ୍ଣ ଶୃଙ୍ଗିଧେନୁ ଦେବ ଅଛିଦ୍ର ଅବଧାରଣ କରିବ । ଏ ଉତାର ବସ୍ତ୍ର ଶ୍ରୀମୁଖରୁ ବାହାର କରି ଦୃଷ୍ଟି କଳପଣା କରିବ । ରକ୍ଷୋଘ୍ନ ଆଥର୍ବଣ ମନ୍ତ୍ରମାନ ପଢ଼ି ଶୁକ୍ଳଫୁଲ ଘୃତ ଶ୍ୱେତସୋରିସ ଦୁବ କୁଶାଗ୍ର ଏମାନ ଦେବତା ଶିରେ ଦେବ । ରୂପାପାତ୍ରେ ମଧୁତ୍ରୟ ଭରି ବଇଦିକ ମନ୍ତ୍ର ପଢ଼ି ନେତ୍ର ଅଭ୍ୟଞ୍ଜନ କରିବ । ଏ ଉତାରେ ଘୃତେକରି ସର୍ବାଗଂ ଅଭ୍ୟଞ୍ଜନ କରି ମସୁର ବର୍ଣ୍ଣେ କରି ଉଦ୍ବର୍ଣ୍ଣ ନ କରି ଓଷ୍ଟତୋୟରେ କରି ପ୍ରକ୍ଷାଳଣ କରି ଚନ୍ଦନ ଲେପିବ । ପିଣ୍ଡିକାରେ ଅଭ୍ୟଞ୍ଜନାଦି କରି ବଇଦିକ ମନ୍ତ୍ରେ ନଦି ପାଣିରେ ସ୍ନାନ କରାଇବ । ଚନ୍ଦନ ଜଳରେ କରି ତିର୍ଥଜଳ, ଶିକତା ଜଳରେ କରି ସ୍ନାନ କରାଇବ ପଂଚି ତୋୟରେ କରି ବଳମି କାକୋଂଳା ଲବଙ୍ଗ ଜାଇଫଳ ଯୁକ୍ତକରି ଜଳ ଆଚମନକୁ ପାତ୍ରରେ ଉତର ଦିଗେ ଥୋଇବ । ଦୂର୍ବାକ୍ଷତ ଯୁକ୍ତକରି ପାତ୍ର ଅଗ୍ନିକୋଣେ ଥୋଇବ । ଶ୍ରୀଅଗଂ ପୋଛିବାକୁ ନୂଆ ଧୋବବସ୍ତ୍ର ଗୋଟିଏ ପାତ୍ର ଗୋଟିକେ ପୂରାଇ ଏହି ପାଖରେ ଥୋଇବ । ଆଠ ଦିଗରେ ନୁଆ ଦିପରଖା ଆ... ଗୋଟିରେ ଗୁଆଘୃତରେ କରି ଦିପ ଆଠଗୋଟା ବସାଇବ । ଗୋମୟରେ ହୋଉ କି ବାଲିରେ ହୋଉ ଶଖଚକ୍ର ଶ୍ରୀବଛ କଳଶ ପଦ୍ମ ଏମାନ ଲେଖି ସୁବର୍ଣ୍ଣ ପାତ୍ର ଗୋଟୀକେ ଥୋଇବ ।

ବନ୍ଦାପନା ନିମନ୍ତେ ସୁବାଶ ପୁଷ୍ପ ଗୁଡାଏ ପାତ୍ର ଗୋଟାକରେ ଥୋଇବ । ... ବିଷ୍ଣୁ କୁଣ୍ଡରେ ବିଷ୍ଣୁ ପାଏତ୍ରିମ ... **[132b]** ହୋମ ଅଷ୍ଟୋତ୍ତର ସଏ ଘୃତରେ କରି କରିବ । ଏ ହୋମ ଉଚ୍ଛର୍ଗୀତ ଘୃତ ସବୁ କଳଶମାନରେ ପକାଇବ । ପ୍ରତିମା ଥାପି ପର୍ଣ୍ଣୀକୁଟୀଘର ଗୋମୟରେ କରି ଲିପିବ । ସେଠାରେ ଆଚାର୍ଜ ମୁକ୍ତି ବ୍ରାହ୍ମଣମାନଙ୍କର ତୁଲେ ଶିଳିପିମାନକଂର ତୁଲେ ... ଶ୍ୱେତ ସୋରିସ ପୁନସୃତେ . . ଶହସ୍ରେ ଅର୍ଚ୍ଚନା କରିବ । ସେଥିରେ କୌତୁକ ସୂତ୍ର ବନ୍ଧନ କରିବ ସ୍ଥଣ୍ଡିଳ ଉପରେ ପ୍ରତିମା ପିଣ୍ଡିକାଦିରେ ପୁରାଇ

ଚନ୍ଦନ ବୋଲି ପଣାକୁ ବିଷ୍ଣୁକରି ଧ୍ୟାନ କରି ଗନ୍ଧାଦିରେ କରି ଆପଣା ପୂଜାକରି ମୁଁ ବିଷ୍ଣୁ ସାକ୍ଷାତ୍‌କାର ହୋଇ ଏ ପ୍ରତିଷ୍ଠା କରୀଅଛି । ଏମନ୍ତ ମନରେ ବିଚାରି ଏ କର୍ମମାନ ସବୁ କରିବ । ସ୍ୱସ୍ଥାନ ମୁତ୍ତିକା ଉଇହୁଂକା ତାରା ତୋୟ ମୃତ୍ତିକା ବରାହଦାଣ୍ଡ ମୃତ୍ତିକା ଗଜଦାନ୍ତ ମୃତ୍ତିକା ବୃସଭ ସିଘଂ ମୃତ୍ତିକା ପଦ୍ମ ଫୁଲ ମୂଳ ମୃତ୍ତିକା କୁଶମୂଳ ମୃତ୍ତିକା ତିର୍ଥ ମୃତ୍ତିକା ପର୍ବତ ମୃତ୍ତିକା ନାଗେସ୍ୱର କୁଙ୍କୁମ ଚନ୍ଦନ ଅଗୁର କପୂର ବଇଡୁର୍ଯ ମୁକୁତା ହିରା ପୋଏଳା ସ୍ୱଟୀକ  ନଦିନଦ ତଡାଗ ଏତେ ଜଳ ମୃନ୍ତିତ୍ତି ଏତେ ରନ୍‌ଯୁକ୍ତ କରି ପାଣ୍ଡର କଳଶମାନରେ ପୁରାଇ ଏକାଶି କଳଶ ମଣ୍ଡପର ପୂର୍ବ...ଦିଗ ଅଦିକରି ... ମାନରେ ବସାଇବ । ଶ୍ରୀଶୁକ୍ତେ କରି କଳଶମାନଙ୍କୁ ଅଭିମନ୍ତ୍ରଣ କରିବ ।  ଶ୍ୱେତସୋରିସ ଗନ୍ଧ କୁଶାଗ୍ର ଅକ୍ଷତ ତିଳଫଳ ଗୁଆଫଳ ଜଳ ଏମାନ ଯୁକ୍ତ କରି ଶଖରେ ପୁରାଇ ଏ ଅର୍ଘ୍ୟପାତ୍ର ପୁର୍ବ ଦିଗରେ ଶଖବଇଠୀ ଉପରେ ଥୋଇବ ପଦ୍ମ ସାମଲତା ଦୁବ ବିଷ୍ଣୁ ପର୍ଣ୍ଣି କୁଶ ଏତେ ଯୁକ୍ତ କରି ଜନମ... ଦୁଧମଧୁ ଏ ମଧୁ ଅଭାବେ ଖଣ୍ଡ... ଏ ମଧୁପଇ ପକ୍ଷିମ ଦିଗେ ଥୋଇବ ।  ନଇରୀତ ଦିଗେ ମନ୍ତି ପଚଂଗବ୍ୟ ଯୁକ୍ତ କରି କୁମ୍ଭ ଗୋଟୀଏ ଥାପିବ । ଏ ବାଇବ କୋଣେ ବଟ ଅସ୍ୱସ୍ଥ ଉଦମ୍ବର ପଲାସ ଏମାନ ଛେଚି କସାୟ ଯୁକ୍ତକରି କୁମ୍ଭ ଗୋଟିଏ ଥାପିବ ।  ଇଶାନ କୋଣେକୁ ମାରି ଗୁଳୁଚି ଛ... ପ୍ରା **[133a]** ଲକ୍ଷଣା  ଯୁକ୍ତ କରି କୁମ୍ଭ ଗୋଟିଏ ଥାପିବ ।  ଅଶ୍ୱଶାଳ ମାଟୀ ଉଇହୁକାଂ ମାଟୀ ଗଗାଂ ବାଲୁକା ଗଗାଂ ପାଣି ଯୁକ୍ତ ବରାହ ବୃଷଭ ଗଜ ଏ ସିଘଂମାନକଂର ମୃତ୍ତିକା କୁଶମୁଳ ମୃତ୍ତିକା ପର୍ବତ ମୃତ୍ତୀକା ତୀର୍ଥ ମୃତ୍ତିକା ନାଗେସ୍ୱର କୁକୁଂମ ଅଗୁରୁ ଚନ୍ଦନ କପୁର ବସ୍ତ୍ର ମୁକୁତା ହିରା ... ଯୁକ୍ତ କରି କୁମ୍ଭ ଗୋଟିଏ ଗନ୍ଧଜଳ ଯୁକ୍ତ କରି ବସାଇବ ।

ଏଥକୁ ଆଚାର୍ଯ ପ୍ରାତଃକାଳୁ ନିତିକର୍ମମାନ ସାରି ଆସି ଗୋଡ଼ ଧୋଇ ମଣ୍ଡପଠାରେ ଆସି ନବିନ ଧୋବ ତଡ଼ପ ଗୋଟୀଏ ପିଧିଂ ଗୋଟୀଏ ଦେହରେ ଦେଇଂ ଉଷ୍ଣୀଷ ମଥାରେ ଗୋଟିଏ ବାନ୍ଧି କର୍ଣ୍ଣରେ ହସ୍ତରେ ଅଳଂକାର କୁଣ୍ଡଳ ନୁଆ ବସ୍ତ୍ର ଗୋଟୀଏ ଗୁଡ଼ିଆଇବ ।  ଏ କଳସକୁ ଆମ୍ବପତ୍ର ଗୁଡ଼ିଏ ଦେଇ ଉପରେ ନଡ଼ିଆ ଗୋଟୀଏ ଦେଇଂ ଏ କୁମ୍ଭ... ... ଆଗରେ ବେଦୀର ଚାରିକୋଣରେ ମଧ କରିବ କେତେ ଗୋଟୀ କଳଶ ଥାପିବ ।  ଏ କଳଶ ମାନରେ ଜଳ ପୁରେଇଥିବ ଏ ବେକରେ ବସ୍ତ୍ର ଗୋଟୀଏ ଲେଖାଁଏ ଗୁଡ଼ିଆ ହୋଇଥିବ । କଳଶ ମୁହରେ ଆମ୍ବପତ୍ର ଥିବ । ଏ ବେକରେ ନଡ଼ିଆ ଗୋଟୀଏ ...  ଶୁଆହୋଇଥିବ ।  ଏ ପ୍ରକାରେ କଳଶ ଥାପିବ ।  ଏ କଳଶମାନ ଦିଗମାନରେ ଏ ପ୍ରକାରେ ଥାପିବ ... । ଏଥକୁ ଗୁଆଦୁଧ ଦହି ଘୃତ ଏ ଗୋମୟକୁ ପାଚଂ ପଦାର୍ଥ ଭିଆଥିବ । ମଣ୍ଡେପ ଚାରିକୋଣରେ ଚତୁରଶ୍ର, ଅର୍ଧ ଚନ୍ଦ୍ରାକାର ମଣ୍ଡଳାକାର ଏମନ୍ତ ଦ୍ରୀଘପ୍ରତି ଗମ୍ଭରାଏ ଲେଖାଏ କରିବ ପ୍ରକାର କରି ହୋମକୁଣ୍ଡ ଚାରିଗୋଟି କରିବ ।  ଏ କୁଣ୍ଡ ଗୋଟି... ମଣ୍ଡପର ଦ୍ୱାର ତୋରଣାମାନରେ ଦୁଇ ପତକା ଦୁଇ କୁଶ ମାଳ ଦୁଇ ଫୁଲ... ଲେଖାଏଁ ସରିବାର ତୋରଣାମାନରେ ମଣ୍ଡିବ ॥୦॥

ଏ ତୋରଣାମାନ ମଧରେ ଧ୍ୱଜଦଣ୍ଡ ସାତହାଥ ଲେଖାଁଏ ହୋଇବ । ଏ ଧ୍ୱଜଦଣ୍ଡ ମାନରେ ପତଗାମାନ ବାନ୍ଧିବ । ଏ ପତକା ଲମ୍ବ ଓସାର ସୋଳ ଆଗୁଂଳ ଲେଖାଏଁ ହୋଇବ । ଏ ପତକାମାନ ବର୍ଣ୍ଣ ଅରୁଣ ବର୍ଣ୍ଣ, ଅଗ୍ନିରି ପରା ବର୍ଣ୍ଣ କୃଷ୍ଣ ବର୍ଣ୍ଣ ପିତ ବର୍ଣ୍ଣ, ରକତ ବର୍ଣ୍ଣ ଏ ପ୍ରକାରେ ପତକାମାନେ ବର୍ଣ୍ଣମାନ ହୋଇବେ । ମଣ୍ଡପର ମଧ ସମ... ଚାନ୍ଦୋଆ ଗୋଟୀଏ ବାଧିଂବ । ପାଣ୍ଡର ବର୍ଣ୍ଣ କଳଶରେ ଲୁଗାରେ କ୍ଷାଣି ଜଳ ୧୨୮ପ୍ଲ ପୁରାଇବ । ଏଥି ଶୁବର୍ଣ୍ଣ ଖଣ୍ଡିଏ ପକାଇବ । ଏ କଳସରେ ସାଦ ପୂର୍ବ ଦିଗରେ ପ୍ରତିଷ୍ଠା ମଣ୍ଡପ ଏ ପ୍ରାସାଦକୁ ମଣ୍ଡପ ଦୁଗୁଣ ଓସାର ହୋଇବ । ଏ ମଣ୍ଡପ ଚାରି ଦିଗରେ ବାଡ଼ ଦେଆ ହୋଇବ । ଏ ମଣ୍ଡପର ଚାରିଆଡ଼ରେ ଚାରିଦୁଆ ହୋଇ ଚାରି ... ... **[133b]** କାଠରେ କରି ତୋର. ପାରଂ ହାଥରେ ୧... ହୋଇବ । ଏ ମଣ୍ଡପରେ ହୋମ ଧୂଆ ଜିବାକୁ ଉପର ଚାଳ କରିବ । ଏ ମଣ୍ଡପରେ ଥିରେ ଚାନ୍ଦୋଆ ଚାମର ବଶ୍ର ଘଣ୍ଟି ଫୁଲ ଏ ମାନ ମଣ୍ଡିବ । ଏ ମଣ୍ଡପର ଈଶାନକୋଣେ ଅଧିବାସ ସ୍ଥାନ ମଣ୍ଡପରେ କଳଶ ଥାପିବାକୁ ବେଦି ଗୋଟିଏ କରିବ । ମଣ୍ଡପର ପୂର୍ବ ଦିଗରେ ଦ୍ରବ୍ୟମାନ ଥୋଇବାକୁ ଥାନ ହୋଇବ । ଏ ମଣ୍ଡପର ତିନି ଭାଗର ଅଧଭାଗକରେ ହାଥେ ଉଚ୍ଚ କରି ବେଦୀ ଗୋଟିଏ କରିବ, ଏଥି ଗଗାଂ ବାଲି ପକାଇ ପଚଂଗବ୍ୟେ ଏ ବେଦି ପ୍ରୋକ୍ଷଣ କରିବ । ଯେତେଠାରେ ପଚଂଗବ୍ୟ ଲୋଡ଼ା ହୋଇବ ଏଥ... ବୈଦିକ ମନ୍ତ୍ରେ କରି ସ୍ତୁତି କରିବ... ତେତେ ସ୍ଥାନରେ ପୁଷ୍ପମାନରେ ପ୍ରୋକ୍ଷଣ କରି ବୈଦିକମନ୍ତ୍ରେ ସ୍ତୁତି କରିବ । ବୈଦକମନ୍ତ୍ରେ ପଢ଼ି ପରମେଶ୍ୱରକୁଂ ନେଇ ଖଟରେ ତୁଳା ଶେଯ ଉପରେ ବିଜେ କରାଇବ । ଶୁକ୍ତେ କରି ପିଣ୍ଡିକା ନ୍ୟାଶ କରିବ । ସେଯ୍ୟାରେ ନେଇ ସୋଆଇବ । ବଇଦିକ ମନ୍ତ୍ରେ କରି ପରମେସ୍ୱରକଂ ଶ୍ରୀଅଗଂରେ ନ୍ୟାସ କରିବ । ଏହାକୁ ସକଳିକରଣ ବୋଲି । ଏ ଉତାରେ ବୈଦିକମନ୍ତ୍ରେ କରି ନ୍ୟାସମାନ ... ଦେଖାଇ ... ଏ ଉତାରେ ଉପକରଣ ଦ୍ରବ୍ୟମାନ ସବୁ ପାଦପଦ୍ମଠାରେ ଆରୋପକରିବ । ରତ୍ନ ଗର୍ଭ ହୋଇବ । ବଶ୍ର ଯୁଗ୍ମରେ ଅର୍ଚ୍ଚିତ ହୋଇବ । ଏହା ବୈଦିକ ମନ୍ତ୍ରେ କରି ପରମେସ୍ୱରକଂ ତ୍ରିମୁଣ୍ଡି ସଳଖେ ଥୋଇବ । ଏ ଉତାରେ ସୃଷ୍ଟି ଚିନ୍ତା କରି ତତ୍ତ୍ୱ ପୂଜା କରିବ । ଏ ଉତାରେ ଦେବ ସ୍ୱରୂପ । **[...]**

# II

## [କ୍ଷେତ୍ର ବିବରଣ]

### II.A. [କୋଣାର୍କ (ଅର୍କ କ୍ଷେତ୍ର)]

**[128a] କୋଣାର୍କ କ୍ଷେତ୍ର ୧୮ ଏ କ୍ଷେତ୍ରର ପରିମାଣ** *ବ୍ରହ୍ମପୁରାଣେ* -

ସମନ୍ତାଯୋଜନଂ ସାଗ୍ରଂ ଭୁଞ୍ଜ ସ...ଫଳପ୍ରଦ ।

*ସାମ୍ବପୁରାଣେ* -

... ପରିମାଣେ ... ତ୍ରୈଲୋକ୍ୟ ବିଶ୍ରୁତେ ଆସ୍ତେ ଚତ ସ୍ୱୋତ୍ୟ ସୂର୍ଯ

ସାମ୍ବା ପୂଜା...ସ୍ୱକାରଣାତ୍

*ପଦ୍ମ ପୁରାଣେ* -

ପୁରୁସୋତ୍ତମସ୍ୱ ପୂର୍ବ ସ୍ୟାଦିସିତି ସୃତିକା ସ୍ୱର

କେ ବୋଲଇ ସୂର୍ଯ ପ୍ରତିମା ସ୍ୱରୂପ ହୋଇ ଆସି  କ୍ଷତ୍ରରେ ଶାମ୍ବକୁମାରଙ୍କୁ ଦ୍ରସନ ଦେଲେ । କେ ବୋଲଇ ହୀରା ଲକ୍ଷ ଦୀପ ହୋଇ ଦ୍ରସନ ଦେଲେ । ଏଥକୁ ବ୍ରହ୍ମପୁରାଣ ମତେ ଋଷିପ୍ରତି ବ୍ରହ୍ମୋବାଚ ।

ଅତପସ୍ୟନ୍ତି ଯେ ଭାନୁ ମାହିତ୍ୟ ମୁକ୍ତି ସଂସ୍ଥିତଂ ।
ତାରୟନ୍ତୁ ନରାଃ ପୂତା ଆତ୍ମାନଂ ଗୋତ୍ର ବାନ୍ଧବୈଃ ।।

... ... ପ୍ରତୀ ବଶିଷ୍ଠ ବାକ୍ୟଂ-

ସ୍ନାନାର୍ଥଂ ନାତିଦୂରସ୍ଥାଂ ଚନ୍ଦ୍ରଭାଗାନଦୀଂ ଯଚ୍ଚୌ ।
ସମ୍ମତଃ ସହସୈବୋଥ ପସ୍ୟନ୍ତିସ୍ୱ ପ୍ରଭାବତି ।
ଉର୍ଘୀମାନା ପ୍ରତିସାସଂ ସୁଖି ଭବେ ।
ସଦାମୁର୍ତ୍ତୀର୍ଯରାସଲିଳା ଦାନି ଝବାମ୍ବମାଗ୍ରମଂ

ପଦ୍ମପୁରାଣେ -

ସପ୍ତାଙ୍ଗୁଳ ପ୍ରମାଣଂ ତୁବର୍ତ୍ତୁଳଂ ମଣିଦ ଶୁଭଂ
ସୂର୍ଯସ୍ୟ ଦେହାନି ଚନ୍ଦ୍ର ଯାମ୍ବବତିସୁତ ।

ଶିଳ୍ପଶାସ୍ତ୍ରେ ପ୍ରତିମା ସ୍ୱରୂପ-

ଆଦିତ୍ୟୋ ଦିଭୁଜଃ ପ୍ରୋକ୍ତୋ ଯୁବାଲକ୍ଷ୍ମୀହୌ
କମ୍ବୁଗ୍ରୀବଃ ପୀନବକ୍ଷାଃ ଅଳକାଳଂକୃତଃ ଶୁଭଃ ।
ସର୍ବାଭରଣ ସଂଯୁକ୍ତୋ ଦିପ୍ରଃଶ୍ଳକ୍ଷ୍ଣୋ ଦ୍ୱିଲୋଚନଃ ।
ପଦ୍ମସ୍ଥଃ ... ... ଟେଟିକା... ... ରଥ ସଂସ୍ଥିତଃ ।
ଏକଚକ୍ର ରଥସ୍ତସ୍ୟ ସପ୍ତାଶ୍ୱୋରଣ ସାରଥିଃ ।
ହସ୍ତୟୋ ପଙ୍କଜୌ ତସ୍ୟ କାର୍ଯ୍ୟୋସ୍ୟା ... ଶୁଭୌ ।
ଦଣ୍ଡ ପିଫଳ ... ... ପ୍ରତିହାରୌ ବିଭୁସିତୌ ॥

**[128b]**ଏ ପ୍ରକାରେ ସୂର୍ଯ୍ୟ ପ୍ରତିମା । ଏମନ୍ତ ଆଜ୍ଞା ପାଇ ଶାମ୍ବ କୁମାର ରୋଗରୁ ମୁକ୍ତ ହୋଇ ... ଉଭାହୋଇ ଦ୍ୱାରକାପୁରକୁ ଜାଇ ଠାକୁରଙ୍କୁ ଦରସନ କରି ଏ ସମସ୍ତ କଥାମାନ ଜଣାଇଲେ । ଠାକୁରେ ଆଇଗ୍ୟାଂ ଦେଲେ, ଗରୁଡ ପିଠିରେ ବସୀ ଜାଇ ସେ ବ୍ରାହ୍ମଣମାନଙ୍କୁ ଆଣ । ଆଗ୍ୟାପାଇ ଗରୁଡ ପିଠୀରେ ବସି ସାକ ଦିପକୁ ଜାଇ ସେ ବ୍ରାହ୍ମଣମାନଙ୍କୁ ଆଣିମାବେଳକୁ ସେ ବ୍ରାହ୍ମଣେ ମନେ ବୋଇଲେ ଶାମ୍ବ ତୁମ୍ଭେ ଅଇଲ, ଆମ୍ଭଙ୍କୁ ଯଦି ଆଗ୍ୟାଂ ଦେଇ ଅଛନ୍ତି ଜିବାପାଇଁ ହେଉ ଜିବା । ଏମନ୍ତକୁ ଶେ ବ୍ରହ୍ମଣମାନଙ୍କଂଠାରୁ ସ୍ୟାମ୍ୟ କୁମାର ଅଠାର ଗୋଟି କୁଳ ଆଣିଲେ । ଏ କୁଳ ଗୋଟୀଏ ବ୍ରାହ୍ମଣ ଚାରୀଘର ଲେଖାଏ ବାହାସ୍ତରି ଘର ବ୍ରାହ୍ମଣ ଆଣିଲେ ଗରୁଡଙ୍କ ପିଠୀରେ । ସ୍ୱର୍ଯଙ୍କୁଂ ଆସି ଦ୍ରସନ କରି ସାମ୍ବ ପୁର କରୀ ଏ ବ୍ରାହ୍ମଣମାନଙ୍କୁ ରୁହାଇ ତୋଟା ମଢ଼ଫୁଲି ଦେଶମାନ ଦେଇ ପୁଜା ବିଧି ପରିବାରମାନନ୍ତ ଭିଆଇ ପୁଜା କରାଇ ଆଗ୍ୟା ମାଗି ସାମ୍ବକୁମାର ଦ୍ୱାରକା ବିଜେ କରୀଗଲେ । ଶେଦିନୁ ମିଇତ୍ରାଦିତି ଶୁର୍ଯ କୋଣାର୍କ କ୍ଷେତ୍ରେ ଚନ୍ଦ୍ରଭାଗା ତିର୍ଥ ତୀରେ ବିଜେକରି ରହିଲେ । ଏ ଉତାରେ ଯୁଗମାନଙ୍କଂରେ ରଯାମାନେ ପୁଜାକରାଇ କାଳମାନନ୍ତ ନେଲେ ।

ଏ ଉତାରେ ଏହି... କଳିଯୁଗରେ ଥୋକାଏ ରଜା ... **[129a]** କ୍ଷେତ୍ରରେ ଦେଉଳ ତୋଳାଇ ଆଠ ଗୋଟୀ ବ୍ରହ୍ମପୁର ଶାଶନ ବଶାଇ ପରମେଶ୍ୱରଙ୍କୁଂ ପୁଜା କରାଇଲା । ଏ ଉତାରେ କେସରି ରଯାମାନଙ୍କଂ ଆଦିକରି ଗଗଂବସେ ଚୁଡଗଂଦେବଠାରୁ ଛୋଟ ପୁରୁସୋତ୍ତମଦେବ ରଜା ସରିକି ଭୋଗରାଗ କରାଇ ସେବିକରି କନନ୍ତ ନେଲେ । ଏ ଉତାରେ ଏଥି ରଜା ଏ ଉପର ରଜାମାନେ ଯେତେ ରାଇଜ ଆଏ କରୁଥିଲେ ତହିଁକିଂ ଉତର ଦଖିଣ ଦୁଇ ଆଡର ଅଧିକ ରାଇଯ ଆଏ କଲାକୁ ଦେବତା ବ୍ରାହ୍ମଣ ବଳଭଣ୍ଡାର ରାଇଜ ଆନକରି ଭିଆଣ କଲାକୁ ଏ ଦେବଙ୍କଂ ଭୋଗନିଜୋଗ ପରିବାରକୁ ଏ କ୍ଷେତ୍ର ଦେବତା ମାନକୁ ମଧକରି ଭିଆଣ କରିଦେଲା । ପୁର୍ବରଜାମାନଙ୍କଂ ଦତରୁ କିଛି ... ମହାରଜାଏ ...କଂ ଦେଲେ କା୩୦୦୦୯୮ ପୋରୋ ନାଏକ ଶ୍ରୀଚରଣ ଅଗ୍ରତେ ଯାଣାଇ

ଏ ତୀନି ଭାଗର ଭାଗେ ଭିଆଣ କରୀ ଦେଲାର କା୧୦୦୦ ଗାଏ ପଦ ୨୯ କଉଡି କା୫୨୫୦୦୯ ରାଇଯ ଶୁନାଭିଆଣ ହୋଇଲା ନିମନ୍ତେ ଏ କା୧୫ଢ ଶୁନା ମା୧ ଲେ. ଶୁନା ମା୩୫୦୦ଢ ଭୀଆଣ କରିଦେଲାର

**ଏ ଦେବକଂ ଭୋଗ ନିଜୋଗ ୧୯** ... ଭୋଗ ୧ ଦୁଇପହର ଭୋଗ ୧ ସଂଝଧୂପ ଭୋଗ ୧ ବଡଶିଂହାର ଭୋଗ ୧ ବଲଭଭୋଗ୧ ଗାଏ ଭୋଗ ୭୯ଦୀ୧୯ଶୁ ମା ପାଂ ଚ ଢ଼ ଲେ. ବରସ ୧୯ଦି୩୬୫୯ ବିସେଇକି ନ ଦେବାର ଦି୫ ଶୈନିକର ଦି୩୬୦୯ ମା୧୮୦୦ କ୍ଷେତ୍ର ଭୋଗ ୧୯ ମା୧୦୦ ଗାଏ ପ୨ ମା୧୯୦ ... ଭିଆଣକୁ ମା୨୦ ... କପୁର ଚନ୍ଦନକୁ ମା... ତୋଟା ଭିଆଣକୁ ମା୧୦୦ଢ଼ ସପତମି ଆଦି ଦ୍ୱାଦଶ ଛାତ୍ରା ଭୀଆଣକୁ ମା... ସେବକ ବରତନକୁ ମା୪୦୦ ଗାଏ ପଦ ୯ ମା୩୦୦

କ୍ଷେତ୍ର ଦେବତାମାନେ ପୁଜାକୁ ଯାୟାଦେବିକଂ ମାଢ଼ ... ଅଷ୍ଟସମ୍ଭୁଦେବତା ରାମେସ୍ୱର ଗଡରେ ଚିତେସ୍ୱର ମଙ୍ଗଳେସ୍ୱର ଈସାଣେସ୍ୱର ମୁକତେସ୍ୱର ... ଉତଳେସ୍ୱର ଗାଏ ଦେବତା ୮ ମା୧୬୦ [129b] ... ଖାଲକୋଠା ରାମଚଣ୍ଡୀ ଭଗବତୀ ରୁଦ୍ରାଣୀ ...ସ୍ୱରୀ ଗାଏ ଅଷ୍ଟ ଚଣ୍ଡି ଦେବି ୮୯ ମା୧୨୦ ଅରୁଣ ଦେବତା ମା୧୫ ମାଢ଼ର ପିଘଂଳଦଣ୍ଡ ଚଣ୍ଡାଂଶୁ ଏ ଚାରି ଘର ସାନି ଦେବତା ୪୯ ମା୪୮ କ୍ଷେତ୍ର ନାନା ଦେବତାମାନ ପୁଜାକୁ ମା୬୦ ଚନ୍ଦ୍ରଭାଗା ତିର୍ଥ ପୁଜା ମାର୍ଜନସ୍ଥଳ ଆକାସ ଦେବତାମାନଙ୍କୁ ... ପୂଜା ମା୨୦ । ମୂଳ କୋଣାର୍କ ଦେବକୁଂ ମା୧୦ ଅର୍କବଟ ପୁଜା ମା୫ ଗାଏ ।

ଏ **ଅନଗଂଭୀମଦେବ** ମାହାରାଜା ଏ ଶ୍ରୀପୁରୁସୋତ୍ତମ ଦେଉଳ ବଡ କରିବେ ବୋଲି ବିଚାରି ଥାଇ ସାନକରି ତୋଳାଇଲାକୁ ଏ ପ୍ରାଶାଦକୁ ମାହାରାଜାକଂ ଉତାରେ ଏହାକଂ ପୋଓ **ଷଡରାଏ ନୃସିଙ୍ଗଦେବ** ମାହାରାଜା ଏ ଅର୍କକ୍ଷେତ୍ରରେ ପୁରଧଂର କେସରି ରଯା ଯେଉଁ ପ୍ରାସାଦ ତୋଳାଇ ଥିଲା ତହିଁରୁ ଆକାରେ ପଦ୍ମତଳା ଉପରେ ପ୍ରସାଦ ତୋଳାଇବାକୁ ଏ ରଯାକଂର ପାତ୍ର **ସୁବାଇ ସାନ୍ତରା** ମାହାପାତ୍ରକୁଂ ସାଢ଼ୀ ଦେଇ ରାଇଜ ଆଏ ମୂଳରୁ ଶୁନା ଦେଇ ଏ ପ୍ରସାଦ ତୋଳାଇ ପ୍ରତିଷ୍ଠାକରି **ପୁରଧଂର କେସରି** ଦେଉଳରୁ ଏ ଦେବକୁଂ ଆଣି ପ୍ରସାଦେ ବିଜେକରାଇ ଅନଗଂଭୀମଦେବ ରାଜା ଦେଲା ବାହାରେ ଅଧିଂକ ଭୋଗରାଗମାନକୁ ଦେଶମାନ ଦେଇ ପୁଜାକରାଇ ପୁଜାକରାଇଲା ଉତାରେ ଅନଗଂଭିମଦେବ ରଯାଏ ପାପରୁ ମୁକ୍ତହୋଇ ସ୍ୱର୍ଗରେ ଦେବଲୋକ ହୋଇ ରହିଲେ ଏ ଉତାରେ ବଡରାଏ ନୃଶିଘଂଦେବ ମାହାରଜାଏ ଆଦି କରି ରଜାମାନେ ଦେବକୁଂ ଶେବାକରି ଶୁଖେ ପୃଥିବୀ ଭୋଗରୁ ସ୍ୱର୍ଗକୁ ଗଲେ ।

**ଦକ୍ଷିଣଦିଗ** ଦଣ୍ଡପାଟେ ... ସମୁଦ୍ର ତୀରେ ପୂର୍ବଦିଶେ ଅର୍କକ୍ଷେତ୍ରରେ କୋଣାଅର୍କ ଦେଉଳ ୧୯ ଗଂଗବଂସେ ପାଟ ୮ ଉତାରେ ବିରଶ୍ରୀ ଗଯପତି ବଡରାଏ ନୃସିଂଙ୍ଗଦେବ ମାହାରଯାଏ ପୁରଂଧର କେସରି ରଜା ତୋଳାଇଥିଲା ଦେଉଳ ଆଗରେ ତୋଳାଇବା

ବଡଦେଉଳ ୧୯ ଏ ଦେଉଳର **ମୁକୁନ୍ଦଦେବ** ରଯାକଂ ଏବାହାନ ଉତାରେ ଢ... **[130a]** ଏ ଦେଉଳ ଉପର ଉଡ୍ରକେ ଏ ଦେଉଳର କି..ଚି ନେପାଳି ତମ୍ଭା କଳସ ପଦ୍ମଧଜ ମଇଧ କରୀ ଭାଗିଂନେଇଥିଲେ । **ଶ୍ରୀରାମଚନ୍ଦ୍ରଦେବ** ମାହାରାଯାକଂ ନାତି ପୁରୁସୋତ୍ତମ ଦେବ ମାହାରାଯକଂ ପାଅ ଶ୍ରୀନରଶିଘଂ ଦେବ ମାହାରାଜାଏ ୨୯ଅଙ୍କ ମିନ ଦି୨୮ନେ ଭା୭ ସୋମବାର ଦେଉଳ ଦେଖିବା ନିମିତେ ଶ୍ରୀପୁରୁସୋତ୍ତମ ବିଜେକର ଜିବାବେଳେ ... ସେଲା ପାତୀସାକଂର ହୋଇ ଓଡୀସାକୁ ବାହାବାଖରଖା ହୋଇଥିଲା । ଏ ନିମନ୍ତେ ଏ ଢମନ ଉପଦ୍ରବ ନିମତେ ଏ ମଇଡ୍ରାଦିତ ବିରଗଦେ ଶ୍ରୀପୁରୁସୋତମ ଦେଉଳେ ନୀଳାଦ୍ରୀ ମହୋଛବ ଦେଉଳେ ବିଜେକରିଥିଲେ । ମାହାରଯା ଏ ତୁଛା ଦେଉଳ ଦେଖିବାକୁ ବିଯେକରି ଏ ଦେଉଳ ମପାଇଲେ । ଆଗ୍ୟା ପ୍ରମାଣେ ଶ୍ରୀପୁରୁସୋତ୍ତମ ଦେଉଳକୁ ଆସି ... ତଳପ କରାଇଲା ।

ପ୍ରମାଣେ ଏ ମାହାରଯାକଂ ଶ୍ରୀହସ୍ତରେ ୨୮ ଅଠାଇସି ଆଙ୍ଗୁଳ ଶ୍ରୀହସ୍ତ ପ୍ରତୀମାପରେ ଏ **ବଡଦେଉଳ** ୧୯ ଏ ଦେଉଳ ଉପରେ ଚମ୍ପେକ ଉହାଧାରଣା ପୋତା ବାହାରେ ଉଭାରେ ଅଛି କାଠୀ ୧୨୫ ଏକପୁରୀ ମାପକାଠୀ ୩ ଆଗୁଂଳ ୬ ସରିକି କାଠୀ ୧୨ ସିଘଂ ଗରୁଡ ଏ ଗେରୁକାଠୀ ପାଟୀ ୧୫ ଅଏଳା ଉପର ଶିଘଂ ଗରୁଡ ତଳ ତଳୁ ପଦ୍ମ ପରା ସରିକି କାଠୀ ୮୭୫ ଗାଏ ପଦ ୯ କାଠୀ ୧୧୬ ଆଗଂୁଳ ୭୦ଣ୍ଢ ଏହା ଧାରଣା ଉପରେ ଅଛି । କାଠୀ ୧୨୫ ଦେଉଳ ବରତମାନେ ଅଛି କାଠୀ ୧୦୪ ଆଗଂୁଳ ୬ ଗାଏ ପଦ ୨ କାଠୀ ୧୧୬ ଆଗୁଂଳ ୨୦ ଏ ବାହାରେ ପୂର୍ବରେ ଥିଲା ଭାଜି ଅଛି । ଏ କଳସ ଉପରେ ପଦ୍ମ ଧଜା ଥିଲା । କାଠୀ ୧୨ ... ଗାଏ ପଦ ... କାଠୀ ୧୨୦

ଏ ଦଣ୍ଡର **ମୁଖସାଳି ସାନଦେଉଳ** ୧୯ ମାପକାଠୀ ୭୩ ଏ ଦେଉଳ ଆକୃତି ଆଗପାଟ ... ପଛିମ ହୋଇ କାଠୀ ୧୬ ଆଙ୍ଗୁଳ ୮ ଉତର ଦଖିଣ ହୋଇ କାଠୀ ୨୩ ଏ ପୁବକୁ ବରତମାନେ ଅଛି ପାବଛ ଗୋ୧୨୯ ଏ ଗୋ୧୯ ଲମ୍ବ କାଠୀ୧୩ ଆଙ୍ଗୁଳ ୮, ଓସାର କାଠୀ ୨ ଲେଖାଏଁ ଏ ପୁବଦୁଆର ତୋରଣା ଖମ୍ବ ଗୋ୧**[130b]**ଓସାର କାଠୀ ୪ ଲେଖାଏ ଖମ୍ବ ଗୋ୨ ଏ ଖମ୍ବ ମାତ୍ର ଦିସୁଅଛି ଗୋ୧୯ ଏ ଦୁଆର ପାବଛ ଗୋ୫ ଏଥି ଲମ୍ବ କାଠୀ ୧୦ଯ୍ଧ ଓସାର କାଠୀ ୨ ଦୁଆର ଓସାର କାଠୀ ୪ ଆଗୁଂଳ୨ ପାଖେ ବାଡ ମୁଗୁନି ପାଟ ଗୋ୨୯ ଏ ଗୋ୧୯ ଓସାର କାଠୀ ୩... ଉଚ୍ଚ କାଠୀ ୭ଯ୍ଧ ପାଦେହଳ କାଠୀ ୯୵ ମୁଖସାଳି ଦେଉଳ ଦୁଇ ଗମ୍ଭରାକୁ ଓସାର କାଠୀ ୯୫ ଏ ଖମ୍ବ ଓସାର କାଠୀ... ଖମ୍ବ ଓସାର କାଠୀ ୧୦ ଏ ଖମ୍ବ ଉତାରୁ ଦୁଇ ପାଥା ଭାଗକୁ ଏ ପାଥାଭାଗ ଗୋ୧୯ କାଠୀ ୭୫ ଲଖାଏଁ ଗୋ୨୯ କାଠୀ ୧୫ ଗାଏ ମୁଖସାଳି ଦେଉଳ ଓସାର କାଠୀ୨୯୫୵ ଏ ... ବହଳ କାଠୀ ୮ ଲେଖାଁଏ ଦୁଇ ବାଡକୁ କାଠୀ ୧୬ ଗାଏ ମୁଖସାଳୀ ସାନଦେଉଳ ଓସାର ବଡ ମଇଧ କରି କାଠୀ ୪୫୫୵

ବଡଦେଉଳ ଅଣସର ପିଣ୍ଡି ଉତର ଦକ୍ଷିଣ କାନ୍ଥ ଓସାର କାଠୀ ୯ ପୁବ ପଶ୍ଚିମ ହୋଇ ଲମ୍ବ କାଠି ୧୦ ଆଗୁଂଳ ୪ ଦୁଆରଠାରୁ ଉତର ପାବଚ୍ଛ ତଳ ଏରଣ୍ଡି ଜାଏ କାଠୀ ୫୭ ଭୀତର ଦୁଆର ଓସାର କାଠି ୩ ଆଗୁଂଳ ୧୬ ଏ ଭିତର କାଠୀ ୭ୱ ଏ ଦୁଇପାଟ ବହଳ କାଠୀ ୱ୵ ଲେଖାଁଏ ପାଟଓସାର କାଠୀ ୩ୱ୵ ଲେଖାଏଁ ଭୀତର ଗମ୍ଭରା ପୁବ ପଶ୍ଚିମ ହୋଇ ଲମ୍ବ କାଠୀ ୧୮ ଉତର ଦକ୍ଷିଣ ହୋଇ କାଠୀ ୧୮ ଆଗୁଂଳ ୮

**ସିଘାଂସନ** ଲମ୍ବ କାଠୀ ୭ ଓସାର କାଠୀ ୫ୱ୵ଏ ଉଚ୍ଚ କାଠୀ ୨ୱ ଏ ଉପର ସିଘାଂସନ ଗୋ୧୯ ଲମ୍ବ କାଠୀ ୩ ଆଙ୍ଗୁଳ ୮ ଓସାର କାଠୀ ୨ଉଚ୍ଚ କାଠୀ ୧

ଅରୁଣ ଖମ୍ବ ମୋଟ କାଠୀ ୩ୱ ଉଚ୍ଚ ମାପକାଠୀ ଉତର ବାଡେ ପାଦୁକନଳା ବାଡ ଓସାର କାଠୀ ୧୮ ଦକ୍ଷିଣ ଆଡ ବାଡ ଓସାର କାଠୀ ୧୮ ଗାଏ ଦୁଇ ବାଢ଼ ... କାଠୀ ୩୬୬ ଦେଉଳ ପଶ୍ଚିମ ବାଡ ଓସାର କାଠୀ ୧୮ ଭୀତର ଦୁଆର ଠାରୁ ତଳ ପାବଚ୍ଛ ସରିକି ବହଳ କାଠୀ ଏପ୍ରକାରେ ମାପ ହୋଇଲା ॥୦॥

**[131a]**ଏ ସମୁଦ୍ର ପୁବଦିଗେ ଅର୍କକ୍ଷେତ୍ରେ କୋଣାର୍କ ମଇତାଦିତ୍ୟଙ୍କ ଦେଉଳ ୧୯ ଗଙ୍ଗବଂସେ ଶ୍ରୀଅନଙ୍ଗଭିମଦେବ ରଜାଙ୍କ ୧୨ ଅକଂ ଶ୍ରାହି ଭୀଆଣ ୧୯ ଏ ଦେବଦାର ପୂର୍ବ ବେବସ୍ଥା *ଶାମ୍ବପୁରାଣ* ମତେ

ପାଚଂକୋଶ ପରିମାଣେ ନକ୍ଷେତ୍ରେ ତ୍ରୈଲୋକ୍ୟ ବିଶ୍ରୀତେ ।
ଆସ୍ତେ ତତଃ ସ୍ୱୟଂ ସୂର୍ଯ୍ୟଃ ଶାମ୍ଭୋ ପୁଜାଃ ସ୍ୱକାରଣାତ୍ ॥

*ବ୍ରହ୍ମପୁରାଣେ* -

ସମନ୍ତା କୋଗ ନକ୍ଷେତ୍ର ଭଞ୍ଜ ମୁକ୍ତି ଫଲପ୍ରଦ ।
ସୋ... ...

*ପଦ୍ମପୁରାଣେ* -

ପୁରୁସୋତ୍ତମସ୍ୟ ପୂର୍ବସ୍ୟାଂ ଦିସି ତିଷ୍ଠତୀ ଭାସ୍କରଃ ।
କ୍ରୋସମେକଂ ତତଃ କ୍ଷେତଂ ଭୁକ୍ତିମୁକ୍ତି ଫଳପ୍ରଦଂ ॥

*ବ୍ରହ୍ମପୁରାଣେ* ଋଷିଂପ୍ରତି ବ୍ରହ୍ମୋବାଚ ।

ଅପତସ୍ୟତି ଯେ ଭାନୁଦୀତ୍ୟ ମୁକ୍ତି ସଂସ୍ଥିତ ।
ତାରୟନ୍ତି ନରାଃ ପୂତା ଆତ୍ମାନଂ ଗୋତ୍ର ବାନ୍ଧବୈଃ ॥

*ସାମ୍ବପୁରାଣେ* ବୃହଦ୍ଦଳ ରାଜନଂ । ବ୍ରଶିଷ୍ଠ ବାକ୍ୟଂ -

ସ୍ନାନାର୍ଥଂ ନାତୀ ଦୂରସ୍ଥାଂ ଚନ୍ଦ୍ରଭାଗା ନଦୀ ଯଜ୍ଞୌ ସମତଃ
ସହ୍ରସୌବୋଥ ପ୍ରଶ୍ୟତି ସୋମ ପ୍ରଭବତୀ ।

ଉପ୍ତମାନା ଜଳୌଘେନ ପ୍ରତିମା ସଂମୁଖୋ ରବେଃ ।
ମତ୍ରାମୁତ୍ତାର୍ଯ ସଲୀଳା ଦାନୟିତ୍ୱା ସୁମ ॥

*ପଦ୍ମ ପୁରାଣେ -*

ସପ୍ତାଙ୍ଗୁଳ ପ୍ରମାଣଂ ତୁ ଭବତୁ ବର୍ତ୍ତୁଳ ଚ ମଣିବ ଶୁଭଂ
ଶୁର୍ଯସ୍ୟ ଦେହ ନୀଶ୍ରାନ୍ତ ଚନ୍ଦ୍ରଭାଗା ଜଳେ ପତତ୍ ।
ଚମାରାଧୟ ଜନ୍ନେନ ସାମ୍ୟୋ ଜାମ୍ବବତୀ ସୁତଂ ॥

ଏ ପ୍ରକାରେ ବ୍ରହ୍ମା ଆଗ୍ୟାଂ ଦେଲେ କ୍ଷେତ୍ର ଜ୍ୟୋତି ପ୍ରତୀମା ସ୍ୱରୂପ ହୋଇ ବିଯେ କଲେ । ଶାମ୍ବପୁରାଣ ବୋଇଲେ କ୍ଷେତ୍ର ପାଚଂକୋସ । ଦେବତା ପ୍ରତୀମା ସ୍ୱରୂପ ହୋଇ ଚନ୍ଦ୍ରଭାଗା ନଦିରେ ଆସି ବିଜେକଲେ । ପଦ୍ମପୁରାଣେ ବୋଇଲେ ସାତ ଆଗୁଂଳ ହୋଇ ବର୍ତ୍ତୁଳ ପ୍ରକାରେ ଶୁର୍ଯକଂ ଦେହରୁ ମଣି ଆସି ଚନ୍ଦ୍ରଭାଗା ନଦିରେ ବିଜେକଲେ । ଏ ଦେବକଂର ପୂର୍ବ ବେବସ୍ଥା ଜମ୍ବୁଦିପରେ ଭରତ ଖଣ୍ଡରେ ପୂର୍ବ କୋଣେ ଏ ଅର୍କକ୍ଷେତ୍ର ଏ ସଦା ସର୍ବଦା ଶୁର୍ଯକଂର ସ୍ଥାନ ।

ଏଥକୁ ଶାମ୍ବପୁରାଣ ମତେ କହନ୍ତି କେଉଣସି ଦ୍ୱାପର ଯୁଗରେ ଦ୍ୱାରକାରେ ଠାକୁରକଂ ପୁରରେ ଠାକୁରାଣିମାନକଂ ଶଗଂତେ ଠାକୁରେ ଯଳବିହାର କରୁଥିଲେ, ଏମନ୍ତ ସମଏ ଅପସର ନଜାଣି ଶାମ୍ବ କୁମାର ଠାକୁରକଂ ନିକ **[131b]** ଟକୁ ଗଲେ । ଏହାକୁଂ ଦେଖି ଠାକୁରାଣି ଠାକୁରକୁଂ ଗରା ମଣିଲେ । ଏମନ୍ତ ଠାକୁରେ ଦେଖି ଶାମ୍ବ କୁମାରକୁଂ ସାପ୍ୟ ଦେଲେ । ତୁ ଯେ ମା ମାନଙ୍କର ଅବୟବମାନ ଦେଖିଲୁ ତୋହୋ ଦେହରେ କୁଷ୍ଟବ୍ୟାଧି ହୋଇଲା ତୁ ବିରୂପ ହୋ । ଏମନ୍ତ ସାପ୍ୟ ପାଇ ସାମ୍ବକୁମାର ଯଣାଇଲେ ପ୍ରଭୋ ! ଆଗ୍ୟା ପ୍ରମାଣେ ତ ମୁଁ ପାପ ଘେନିଲି ଏ ସାପର ମୁକ୍ତ ହୋଇବାକୁ ମୋତେ ପ୍ରତୀକାର କଅଣ । ଏଥକୁ ଠାକୁରେ ଆଗ୍ୟା ଦେଲେ ସାମ୍ବ ତତେ ଯେ ଆମ୍ଭେ କ୍ରୋଧରେ ସାପ ଦେଇ... । **[...]**

## II.B. [ଭୁବନେଶ୍ୱର (ଏକାମ୍ର କ୍ଷେତ୍ର)]

### [134b]... ଶ୍ରୀଭୁବନେଶ୍ୱରଦେବକଂ ଦେଉଳ ୧୮

ଗଗଂବଂସେ **ଶ୍ରୀଅନଗଂଭିମଦେବ** ମାହାରଯାକଂର ... ଅକଂଶ୍ରାହିରେ ରାଯ୍ୟ ଭିଆଣବେଳେ **ଭୋଗ ନିଯୋଗ ଭିଆଣ** ୧୮ଏ ମୁଦଲ ଭାସା ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ ବରକେଶ୍ୱର ... ... ମାହାରାଜାକଂର ବରଶ ୧୨ ଅକଂ ଶ୍ରାହୀ ମିଥୁନ ଦି୧୫ ନେ ଶୁ୨ ଗୁରୁବାର ବାରଣାସି କଟକେ ଶ୍ରୀନବରେ ପୂଜାମେଲାରେ ଦେବାର୍ଚ୍ଚନ ବଢ଼ୀଲା ଉତାରୁ ବଡ଼ ଅବକାସେ ପାସେ ପାତ୍ର ଦାମୋଦର ପୁରୋହିତ ମାହାପାତ୍ର ବଳଭଦ୍ର ପହରାଯ ମାହାପାତ୍ର ନୀଳକଣ୍ଠ ରାଏଗୁରୁ ମାହାପାତ୍ର

... ବୁଢ଼ାଲେକାଂ ଆଦି ଥାଇ ଆଗ୍ୟା ପ୍ରମାଣେ **ଶ୍ରୀଭୁବନେଶ୍ୱରଦେବକଂ** ଭୋଗ ଭୀଆଣ ୧୮ ଏ ଦେବକଂ ଭୋଗ ୧୮ ସୁନା ମାଢ଼ ୭୫୦୦ ଏଥକୁ ଦେସ ଭିଆଣ ଦେବା ନିମନ୍ତେ ଏ ଦେସମାନ ଧୋଇ ମରୁଡ଼ି ନିମତେ କର ଅଧିକ ଦେବା ଏ ତିନି ଭାଗର ଭାଗେ ସୁନା ମାଢ଼ ୨୫୦୦ ଗାଏ ପଦ ...କୁ ମାଢ଼ ୯୦୦ କପୁର ଚନ୍ଦନ ଭୀଆଣକୁ ମା୧୦୦ ଫୁଲତୋଟା ଭୀଆଣକୁ ମା୬୦୦ ପରବ ଯାତ୍ରା ଭୀଆଣକୁ ମା୧୫୦୦ ଅଖଣ୍ଡ ମାଳପା ଭୀଆଣକୁ ମା୪୦୦ ଗାଏ ପଦ ୫୮ ମାଢ଼ ୪୩୦୦୮ କ୍ଷେତ୍ର ଆଏତନ ଭୀତର ଦେବତାମାନକୁଂ ...ପତି ଅନନ୍ତ ପୁରୁଷୋତ୍ତମଦେବକୁଂ ମା୯୦୦ ଏକାମ୍ରେସ୍ୱର ... ମା୩୦୦ କପିଳେଶ୍ୱର ଦେବକୁଂ ମା୩୦୦ ସିଦ୍ଧେଶ୍ୱର ଦେବକୁଂ ମା୩୦୦ ରାମେଶ୍ୱର ଦେବକୁଂ ମା୧୫୦ ଶୁକ୍ଳେଶ୍ୱର ଦେବକୁଂ ମା୧୫୦ ନାନା ଶମ୍ଭୁ ଦେବତାମାନକୁଂ ମା୧୦୦୦ ଗାଏ ଦେବତା ଯୋଗେ ମା୩୭୦୦ ସନ୍ୟାଶି ମଠ ଛତ୍ର ଯୋଗେ ମା୨୦୦୦ ସେବକ ବରତନକୁ ମା୧୦୦୦ ଗାଏ ପଦ ..୮ ମାଢ଼ ୩୦୦୦ ପଛ ଭିଆଣେ ପୁରୋ... **[135a]** ...ନ୍ତ କରିଦେଲେ ତିନୀ ଭାଗର ଭାଗେ ମା୭୦୦୦୮ ଶ୍ରୀଭୁବନେଶ୍ୱରଦେବକଂ ସେବା ନୀଯୋଗ ପରବ ଯାତ୍ରାକୁ ମଧ ମା୪୮୦୦ କ୍ଷେତ୍ର ଦେବତାମାନକଂ ଯୋଗେ ମା୧୨୦୦ ସନ୍ୟାଶି ମଠ ଯୋଗେ ମା୬୦୦ ସେବକ ବରତନ ଯୋଗେ ମା୪୦୦ ଗାଏ ପଦ ୪୮ ମାଢ଼.. ୦୦୦ ଏ ସୁନାକୁ ଦେଶ... ନୀର୍ଯାପ ଦେଲା ... ...

## II.C. [ବିରଜା କ୍ଷେତ୍ର]

**ବିର୍ଯ କ୍ଷେତ୍ରେ ବିରଜା ଗୋସାଣିକଂ ଦେଉଳ ୧୮** ଗଗଂବଂସେ **ଶ୍ରୀଅନଗଂଭୀମଦେବ** ମାହାରାଯାକଂର ୧୨ ଅକଂ ଶ୍ରାହୀରେ...ଏ ଦେବିକଂ ଭୋଗ ନିଯୋଗକୁ ନିଯୋଗ ଦେଲା ଏ ଠାକୁରାଣିକଂର ଉତପତି କ... ସତି ଠାକୁରାଣି ଯାଇ ତହିଁ ଦେଖି ସେ ସମସ୍ତ ଦେବତାମାନକୁ ଦକ୍ଷପ୍ରଜାପତି ବରଣ କରିନେଇଅଛନ୍ତି ଏକା ମହେସ ଠାକୁରକୁଂ ଜଟାଧାରୀ କର୍ମି ନୋହନ୍ତି ବା, ଏମନ୍ତ ବୋଲି ସତି ଦେହ ଛାଡ଼ି । ଠାକୁରାଣୀ ବୋଇଲେ ବାପେ ଆମ୍ଭର ସମସ୍ତକୁଂ ହି ନିମନ୍ତ୍ରଣ ଦେଲେ ମୋ ପ୍ରଭୁକୁଂ ବରଣ କଲେ ନାହିଁ ... ଏମନ୍ତ ବୋଲି ସତି ଦେହ ଛାଡ଼ୀଲେ । ଏ ବାରତା ମହେଶ ପାଇ କ୍ରୋଧ କରି ଜଟା ଗୋଟାଏ ଛିଣ୍ଡାଇ ତହୁଁ ବୀରଭଦ୍ର ଜନ୍ମ ହୋଇ ଯାଗ ଅଧିକାରି ଦେବତାମାନକୁଂ ଋଷିମାନକୁଂ ପରାଭବ କରି ଦକ୍ଷପ୍ରଜାପତିକଂ ମୁଣ୍ଡ କାଟୀ ଯାଗ ବିଘ୍ନ କଲେ । ଏ ଉତାରେ ମହେଶ ଆସି କ୍ରୋଧରେ ... ... ହୋଇ ଭୂମୀରେ ମୂର୍ତ୍ତି ଯେତେଠାରେ ପଡ଼ୀଲେ ତେତେ ଠାରେ ଚଉସଠୀ ଦେବୀ ହୋଇଲେ । ତେତେଠାରେ ଚଉସଠୀ ଲିଙ୍ଗ ହୋଇ ମହେଶ ରହିଲେ । ଏଥକୁ ବିର୍ଯ କ୍ଷେତ୍ରେ **[135b]**... ... କରି ବସାଇ ଅସ୍ୱମେଧ ଯାଗ କରି ଜାଜପୁର ନା ଏ ସାସନ ନାମ ଦେଲେ ଏ ନଦିରୁ ଯେ ଦଶ ଅଶ୍ୱମେଧ ଯାଗ କଲେ ଏ ସେଠାରେ ଦସାସ୍ୱମେଧ ... ଏ ତୀର୍ଥ ବୋଲାଇଲା ।

ଏ ତୀର୍ଥରେ ... ଛ ପାଟ ସରିକି ଭୋଗରାଗକୁ ଦେଇଥିଲେ କଉଡ଼ି କା୧୨୫୦୦ ଏ ଉତାରେ ଶ୍ରୀ ଅନଗଂଭୀମଦେବ ମାହାରାଯା ଏ ରାଜସ୍ୱରୁ ଅର୍ଥ କରାଇ ପାଆଏ କରି ଧନମାନନ୍ତ ଆଣିଲାକୁ ଏହାକଂ ଭୋଗରାଗ ଅଳପ ହୋଇଥିଲାକୁ ଅଧିକ ... ଶ୍ରୀଚରଣ ଅଗ୍ରତେ ଜଣାଇ ନିତି ଭୋଗର ଦେସ ଭୋଗକୁ ମା୨୫୦୦୦ ଗାଏ ପଦ..୮ ଉପର ରଜାମାନକଂ ଦତ ମୈଧ କରି ଦେଲା ତା... ଏ ରାଜ୍ୟ ଶୁନା ଭିଆଣ ହୋଇଲାକୁ ଏ କା୧୫୮ ସୁନା ମା୧ ଲେ ସୁନାମାଢ଼ ୨୫୦୦୮ ଦେଲା । ଏଠାରୁ ରାଣିକଂ ଭୋଗକୁ ମା୭୫୦ କପୁର ଚନ୍ଦନକୁ ମା୧୦୦ ମଢ଼ୀଆଳ ଭୀଆଣକୁ ମା୨୦୦ ଏ ଫୁଲତୋଟା ଭିଆଣକୁ ମା୧୦୦ ପରବଯାତ୍ରାମାନକୁ ମା୩୫୦ ଗାଏ ପଦ ୮ ମା୧୫୦୦ ଏ ତ୍ରିଲୋଚନ ଦେବକୁଂ ମାଢ଼ ୧୫୦ କରେ ... ... ମା୧୫୦ ଅଗଣ୍ଡେସ୍ୱର ଦେବକୁ ମା୧୫୦ କ୍ଷେତ୍ରର ନାନା ଦେବତାମାନକୁ ଏ ତୀର୍ଥ ପୁଜା ମଧ୍ୟକରି ମା୧୫୦ ଗାଏ ପଦ୪ ମା୬୦୦ ସେବକ ବରତନକୁ ମା୨୫୦ ପରିକ୍ଷା ପରିକରଣ ମା୧୫୦ ଗାଏ ପଦ ୮ ମା୨୫୦୦

**[136a]** ... ଦଣ୍ଡପାଟେ ମାହାନଦି ଦକ୍ଷିଣ ତିରେ ବାରଣାଶି କଟେକ ଦେବତାମାନକୁଂ ଗଗଂବଂସେ **ଶ୍ରୀ ଅନଗଂଭୀମଦେବ** ମାହାରାଜାକଂର ଦତ ଏ କଟେକ ଆକୃତି ଦେବତାମାନକୁଂ ପୂର୍ବ ରଜାମାନକଂର ଦତ୍ତ କଉଡ଼ି କା୭୫୦୦୮ ଏ କା୧୫୮ ସୁନା ମା୧ ଲେ. ମା୫୦୦ ଏ ମାହାରଜାକଂ ଦତର ମା୫୫୦୦ ଗାଏ ପଦ ୨୮ ମା୬୦୦୦୮ ଗୋରୋ ନାଏକ ଶ୍ରୀଚରଣ ଅଗ୍ରତେ ଜ... ତିନି ଭାଗରୁ ଭା୧ ଶୁନା ମା୨୦୦୦୮ ଏ ଦେବତାମାନକୁଂ ଦେଲା ଉପୃଳେସ୍ୱର ଦେବକୁଂ ମା୨୦୦ ବିସ୍ୱେସ୍ୱର ଦେବକୁଂ ମା୨୦୦ ସ୍ୱପନେସ୍ୱରଦେବକୁଂ ମା୨୦୦ ହରିହର ତିୟୋଦେବକୁଂ ମା୨୦୦ କ ବଡ଼ ନବାଭି ସମ...ଦେବକୁଂ ମା୧୫୦ ନିଳକଣ୍ଠେଶ୍ୱର ଦେବକୁଂ ମା୧୦୦ ପବଗତ ନିଳକଣ୍ଠେସ୍ୱରଦେବକୁଂ ମା୧୦୦ ବାସକିଂସ୍ୱର ଦେବକୁଂ ମା୧୦୦... ସିଦ୍ଧେଶ୍ୱର ଦେବକୁଂ ମା୧୦୦ ହରଚଣ୍ଡି ଦେବି ମା୫୦ ଗଡ଼କାଳିକା ଦେବି ମା୫୦ ମାହାମାୟା ଦେବି ମା୫୦ କୋଠାରି ଦେବୀ ମା୫୦ ସଠୀ ଦେବି ମା୫୦ ବୀର ଗଣପତି ଦେବଙ୍କୁ ମା୫୦ ଏ କଟେକ ଅନ୍ଦିମାନର ଦେବାଦେବିମାନକୁଂ ଦେଲା ମା୩୫୦ ଗାଏ ପଦ..୮ ମା ୨୦୦୦ ... ଏ ଦେଶ ଦେବତା ଯୋଗେ ଗଗଂବଂସେ ଶ୍ରୀ ଅନଙ୍ଗଭୀମଦେବ ମହାରାକଂର ଅ୧୨କଂ ରାଯ୍ୟ ଭୀଆଣ ଦେଲା ନାନା ଦିଗ ଦଣ୍ଡପାଟେ **ଦକ୍ଷିଣଦିଗ** ଦଣ୍ଡପାଟେ ୧୬ ବିସେଅର ମଧେ ।

***ରାହାଗଂ*** ବିଶେ ଶୁକଳ ଆଞ୍ଚଳାନ୍ତ ନିଳକଣ୍ଠେସ୍ୱର ଦେବକୁଂ ମା୬୦ ଅଳଗୁମ ଗଡେସ୍ୱର ଦେବ ମା୧୪୦ ବଡ଼ଗା ନାଏଗମଲ ପୁର ଗ୍ରାମେସ୍ୱର ମା୬୦ ଅଳସରଙ୍ଗ ଚଣ୍ଡେସ୍ୱର ମା୬୦ ... ଇ... ମା୪୦ ... ସିଦ୍ଧେସ୍ୱର ମା୨୦ ହିରଣପଡ଼ା ସମଷ୍ଟ ମା୨୫ ଆକୃବା ନିଳକଣ୍ଠେସ୍ୱର ମା୧୫ଅଳସା ଅଳେସ୍ୱର ମା୧୦ ଅନ୍ତିକିରା ଗ୍ରାମେସ୍ୱର ମା୮ ।

ଡିମିରିସେଣା ଗ୍ରାମେସ୍ୱର ମା୨୫ କାଣ୍ଡଗୋଦା... ମା୪ ... କୁରୁଆ ମନ୍ତେସ୍ୱର ମା୧୪ । ଅଳ... [136b]ଉତ୍ତରହେଣା ଉତ୍ତରେସ୍ୱର ମା୧୪ ଫଳପଡ଼ା ଇଶ୍ୱର... ମା୧୦ । ତରଗାଂ ରତନେସ୍ୱର ମା୫ ରେଣ୍ଡୋ ଗ୍ରାମେସ୍ୱର ମା୮ ବାଣପୁର ବାଣେସ୍ୱର ମା୩ ବେଣାକେରା ବେଣେସ୍ୱର ମା୫ ଅଣ୍ଡାରସିଘଂ ସିଂଘେସ୍ୱର ମା୫ ସମସରପୁର କପିଳେସ୍ୱର ... ... ଉତ୍ତରେଶ୍ୱର ମା୦ ନାଗପୁର ନାଗେସ୍ୱର ମା୮ ଗାଏ ଏତେ ଦେବତା ୨୯ ଜିତି ଶୁନା ମା୨୧୩ ।

***କୋଠ ରାହାଙ୍ଗ*** ବିଶେ ୧..୯ ବରାଳ ବାଲୁଂକେସ୍ୱର ମା୪୧୦୦ ପିଗଂଳୋ ସମଥା ମା୧୧୦ ରାଣପୁର ଖମ୍ଭେସ୍ୱର ମା୧୧୦ ଛତାଘର କୁଆଂରେସ୍ୱର ମା୧୪୦ ଏ ଛତାସ୍ୱର ମା୪୦ କୋଠରା ନିଳକଣ୍ଠେସ୍ୱର ମା୩୦ ଧଉଳି ବାରଗେଂସ୍ୱର ମା୩୦ ମାଳି ବରଇ ଉତରେସ୍ୱର ମା୫ ଗୋବିନ୍ଦପୁର ନିଳକଣ୍ଠେସ୍ୱର ମା୬ ରାତିତୋଇ ସିଦ୍ଧେସ୍ୱର ମା୩୫ ଅନ୍ତୋ ଭୋଗତେସ୍ୱର ମା୫ ସୋମପୁର ସମୟା ମା୬୦ ତୋଗୋରୋଂ ଲଖେସ୍ୱର ମା୪୦ ଜଗତେସ୍ୱର.ମା୧୨ ତଳକୁଶୁମା କୁଶୁତେସ୍ୱର ମା୧୫ ଏ ସଠୀଦେବି ଦୁର୍ଗାଦେବି ମା୧୫ ମଳିପଡ଼ା ନିଳକଣ୍ଠେସ୍ୱର ମା୪୦ ... ଶଙ୍କରେସ୍ୱର ମା୧୦ କୋଟସାହୀ ଉପ୍‌ଳେସ୍ୱର ମା୮ ଉତରପଡ଼ା ଉତରେସ୍ୱର ମା୧୫ ବଳରାଗତେସ୍ୱର ମା୧୦ ଗାଏ (ମା) ଦେବତା ୩୨୯ ଜିତିଶୁନା ମା୭୫୧

***ପୂବଦୁଆଇ*** ବିସେ ୧୯ ଡ଼ବାହାର ଇଶାଣେସ୍ୱର ମା୨୦ ବାଲିପୁଟ ଗ୍ରାମେସ୍ୱର ମା୧୨ ସୋକଳେସ୍ୱର ସମୟା ମା୮ ଇତି ସଂଶୁନ୍ଦରେସ୍ୱର ମା୧୦ ସୁଖତିରାଇସ୍ୱର ଦେ ମା୨ ବଣୋଆସ... ମା୮ ଗାଏ ଦେବତା ୬୯ ଜିତି ସୁନା ମା୬୦

***ପକ୍ଷଦୁଆଇ*** ବିସେ ୧୯ ବଳଗଂ ସଉରି ବାକେଂସ୍ୱର ମା୧୦୦ କୋଲୋସା ଗତେଶ୍ୱର ମା୮୦ ପାର୍ବତିପୁର ଗତେସ୍ୱର ମା୪୦ ସନ୍ତ ଉପ୍‌ଳେସ୍ୱର ମା୨୦ ସଉରା ମତ୍ତରେସ୍ୱର ମା୨୫ ପୋରୋହିତପୁର ମଧୁଶୁଦନଦେ ମା୧୫ ପାରବତିପୁର ଭୁବନେସ୍ୱରୀ ମା୨୦ ବେରବୋଇ ସିଦ୍ଧେସ୍ୱର ମା୩୦... କୁକୁଟ... ... [137a]ବଳଗାଂ ବାକେଂସ୍ୱର ମା୫୦ ଗାଏ ଦେବତା ୧୦୯ ଜିତି ଶୁନା ମା୪୧୦ ।

***ଓଳୋଧାର*** ବିସେ ୧୯ ନାଗପୁର ଦଖିଣେସ୍ୱର ମା୩୦ ସୁନ୍ଦର ବାଲୁକେସ୍ୱର ମା୨୦ ବ୍ରହ୍ମାଶୁର ମା୨୦ ଛତିଅନା ଗ୍ରାମେସ୍ୱର ମା୫ ଅରବଚଣ୍ଡୀ ମା୮ ଗାଏ ଦେବତା ୫୯ ଜିତି ଶୁନା ମା୮୩ ।

***ବାଆଟାସ*** ବିସେ ୧୯ ଏରବରଗଂ ରତନେସ୍ୱର ମା୧୦ ଏ ରାମଚଣ୍ଡି ମା୨୦ ... ଅଖଣ୍ଡଳେସ୍ୱର ମା୨୫ ଏ ନରସିଂହନାଥ ଦେବେ ମା୩୦ ବେଗୁନିଆ ଦଖିଣିସ୍ୱର ମା୧୫ ସରିଦୋ ବୁଧେସ୍ୱର ମା୧୦ ଲଖେସ୍ୱର ଘୋଘାଇଶୁଣି ବେଦି ମା୬୦ ବ୍ରାହ୍ମଣଗୁଣ୍ଡି ବଟେସ୍ୱର ମା୧୦ ସନ୍ତୋସ ମାଧବ ଦେବେ ମା୧୦ ଓଡ଼ା ଭଗବତି ମା୮

